# ଗୁରୁ ନାନକ

ଲେଖକ

ଶ୍ରୀ ବୀରକିଶୋର ଦାସ

ବି. ଏ., ଏଚ୍. ଡି. ପି.

ଓଁ ବୁକ୍ ଡିପୋ

# ଗୁରୁ ନାନକ

ଲେଖକ :
**ଶ୍ରୀ ବୀର କିଶୋର ଦାସ**
କଟକ

ପ୍ରକାଶକ
**ଓଁ ବୁକ୍ ଡିପୋ**
କଟକ-୨

ପ୍ରଥମ ପ୍ରକାଶ : ୧୯୯୧

ମୁଦ୍ରଣ :
**ଲିପିକାର**
ଝାଞ୍ଜିରିମଙ୍ଗଳା, କଟକ-୯

ମୂଲ୍ୟ . **ସାତଟଙ୍କା ପଚାଶ ପଇସା**

**GURU NANAK**

By
**Sri Birakishore Das**
Cuttack

Published by
**OM BOOK DEPOT**
Cuttack-2

First Edition : 1991

Printed at :
**Lipikar**
Jhanjirimangala, Cuttack-9

Price : **Rs 7-50**

ଆଜକୁ ପାଞ୍ଚ ଶହ କୋଡ଼ିଏ ବର୍ଷ ପୂର୍ବେ ପଞ୍ଜାବର ଲାହୋର ନିକଟସ୍ଥ ତଲବଣ୍ଡି ଗ୍ରାମରେ ଜନ୍ମ ନେଇଥିଲା ଗୋଟିଏ ଶିଶୁ । ଭାରତ ସ୍ୱାଧୀନହେବା ପରେ ସେହି ସ୍ଥାନଟି ପାକିସ୍ଥାନ



( ମାଆ କୋଳରେ ଶିଶୁ ନାନକ )

ଭାଗରେ ପଡ଼ିଅଛି । ସେହି ଶିଶୁଟିର ପିତାଙ୍କ ନାମ କାଲୁ ମେହେତା ଓ ମାତାଙ୍କ ନାମ ତୃପ୍ତା । ପିଲା ଜନ୍ମହେଲା ମାତ୍ରେ ସାଧାରଣତଃ କାନ୍ଦିବାର କଥା; କିନ୍ତୁ ପିଲାଟି ହସୁଥିଲା । ସମସ୍ତେ ତାହା ଦେଖି ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ମେହେତାଙ୍କ କୁଳ-ପୁରୋହିତ ପଣ୍ଡିତ ହରିଦୟାଲ ନବଜାତ ଶିଶୁଟିକୁ ଦେଖି ଭବିଷ୍ୟତ ବାଣୀ ଶୁଣାଇ କହିଥିଲେ—"ଏ ଜଣେ ଖୁବ୍ ବଡ଼-ଲୋକ ହେବ । ତା ଦୃଷ୍ଟିରେ ହିନ୍ଦୁ, ମୁସଲମାନ୍ ସମସ୍ତେ ହେବେ ସମାନ" । ଆଚ୍ଛା, କହିଲ ପିଲାଏ ! ଏ ଶିଶୁଟି କିଏ ? ଏ ହେଉ-ଛନ୍ତି ଶିଖଧର୍ମର ପ୍ରତିଷ୍ଠାତା ଗୁରୁ ନାନକ, ଯାହାଙ୍କ ଦୃଷ୍ଟିରେ ହିନ୍ଦୁ, ମୁସଲମାନ ସମସ୍ତେ ଥିଲେ ଗୋଟିଏ ସଂପ୍ରଦାୟର ଲୋକ ପରି । ଉଚ୍ଚ ନୀଚ ଭେଦଭାବ ତାଙ୍କ ମନକୁ ଛୁଇଁ ନଥିଲା ।

ବୟସ ହେବାରୁ ଚଟଶାଳୀରେ ତାଙ୍କ ନାମ ଲେଖାହେଲା । ପିଲାଟି ଦିନରୁ ତାଙ୍କର ବୁଦ୍ଧି ଥିଲା ବିଚକ୍ଷଣ । ଯେଉଁ ପଣ୍ଡିତ ଓ ମୌଲବୀମାନେ ତାଙ୍କୁ ପାଠ ପଢ଼ାଉଥିଲେ ସମସ୍ତେ ତାଙ୍କ ପ୍ରତିଭା ଦେଖି ଆଶ୍ଚର୍ଯ୍ୟ ହୋଇଯାଉଥିଲେ । ଯେତେବେଳେ ଗୁରୁ କହୁ-ଥିଲେ—"ନାନକ ! 'ଊ' ଲେଖ ।" ନାନକ ତାହା ଲେଖି ସାରି ପଚାରୁଥିଲେ—"ଗୁରୁଦେବ ! 'ଊ' ଅର୍ଥ କଣ" ? ହେଲେ 'ଊ'ର ଅର୍ଥ ବା କଣ ହେବ ? ଏହା ତ ଗୋଟିଏ ଅକ୍ଷର ମାତ୍ର । ପ୍ରଶ୍ନର ଉତ୍ତର ଦେବାରେ ଗୁରୁଙ୍କ ଅକଲ ଗୁଡ଼ୁମ୍ ହୋଇଯାଉଥିଲା । ଗୁରୁ ନୀରବ ରହିବା ଦେଖି ନାନକ କହୁଥିଲେ—"ଊ' ହେଉଛି ଭଗବାନଙ୍କର ଉପମା—ଯାହାର କି ଅନ୍ତ ନାହିଁ" । ଏହିପରି ଗୁରୁ ଯେଉଁ ଅକ୍ଷର ଶିକ୍ଷା ଦେଉଥିଲେ, ସଙ୍ଗେ ସଙ୍ଗେ ତାହାର ବ୍ୟାଖ୍ୟା କରିଦେଉଥିଲେ ନାନକ ।

ଚାହାଳୀ ଛୁଟି ହେଲା ପରେ ପିଲାଏ ଯିଏ ଯାହା ଘରକୁ ଫେରୁଥିଲେ; କିନ୍ତୁ ନାନକ ଘରକୁ ନ ଫେରି ଆଖପାଖ ଜଙ୍ଗଲକୁ ପଳାଇଯାଉଥିଲେ । ସେଠାରେ ସାଧୁସନ୍ଥଙ୍କ ସଙ୍ଗରେ ମିଶି ପୁରାଣଶାସ୍ତ୍ର ଶିକ୍ଷା କରୁଥିଲେ ଓ ପ୍ରକୃତିର ଅନନ୍ତ



( ନାନକ ସାଧୁଙ୍କ ସହିତ ପୁରାଣ ଆଲୋଚନା କରୁଛନ୍ତି )

ରହସ୍ୟ ବିଷୟରେ ଚର୍ଚ୍ଚା କରୁଥିଲେ । ବେଳେ ବେଳେ

ସେ ଏକୁଟିଆ ବସି ଈଶ୍ୱରଙ୍କ ନାମ ସ୍ମରଣ କରୁଥିଲେ । ପିଲାଦିନୁ ତାଙ୍କର ଗତିବିଧି ଦେଖି ପିତାମାତା ବଡ଼ ଚିନ୍ତିତ ଓ ଉଦାସ-ହୋଇପଡ଼ୁଥିଲେ । ସେମାନେ ଚାହୁଁଥିଲେ ପୁଅ ପାଠପଢ଼ି ଦୁଇପଇସା ରୋଜଗାର କରି ତାଙ୍କର ଭରଣ ପୋଷଣ ଦାୟିତ୍ୱ ନେଉ; କିନ୍ତୁ ନାନକଙ୍କ ରୁଚି ଥିଲା ଭିନ୍ନ ।

ପିତା କାଲୁ ମେହେଟା ଦେଖିଲେ ଯେ ପୁଅକୁ ଆଉ ପାଠ ପଢ଼ାଇ କିଛି ଲାଭ ନାହିଁ । ତେଣୁ ନିରାଶ ହୋଇ ତାଙ୍କୁ ଗାଈ ମଇଁଷି ଚରାଇବା କାମରେ ଲଗାଇଲେ । ହେଲେ ସେ କାମ ବି ତାଙ୍କ ଦ୍ୱାରା ହୋଇପାରିଲା ନାହିଁ । ବାପାଙ୍କ କଥା ମାନି ସେ ଗାଈ ଚରାଇବାକୁ ଯାଆନ୍ତି; କିନ୍ତୁ ନାନକଙ୍କ ଦୃଷ୍ଟି ସେମାନଙ୍କ ଉପରେ ନଥାଏ । ସେ ଗୋଟିଏ ବରଗଛ ମୂଳରେ ବସି ଭଗ-ବାନଙ୍କ ଧ୍ୟାନରେ ବିଭୋର ହୋଇଯାନ୍ତି । ଏହି ସୁଯୋଗ ନେଇ ଗାଈ ମଇଁଷିମାନେ ଅନ୍ୟର କିଆରିରେ ପଶି ଫସଲ ନଷ୍ଟ କରିଦିଅନ୍ତି । ସେମାନେ ଯାଇ କାଲୁ ମେହେଟାଙ୍କ ଆଗରେ ଫେରାଦ୍ ହୁଅନ୍ତି । ଫଳରେ ନାନକଙ୍କ ଉପରେ ଗାଳି ବୃଷ୍ଟି ହୁଏ ।

ବାଲ୍ୟକାଳରୁ ତାଙ୍କର ଯେଉଁ ଅଲୌକିକ ପ୍ରତିଭା ଥିଲା, ତାହା ତଲ୍‌ବଣ୍ଡି ଗାଁର ମୁସଲମାନ୍ ହାକିମ ରାୟ ବୁଲାରଙ୍କ ବ୍ୟତୀତ ଅନ୍ୟ କେହି ଜାଣିପାରି ନଥିଲେ । ତେଣୁ କାଲୁ ଯେତେବେଳେ ପୁଅକୁ ଗାଳିଗୁଲଜ ଦେଇ ମାଡ଼ ଦେଉଥିଲେ, ହାକିମ୍ ତାହାର ବିରୋଧ କରୁଥିଲେ । ଯେଉଁ ଚାଷୀଙ୍କର ଫସଲ ନଷ୍ଟ ହେଉଥିଲା, ସେ ନିଜ ହାତରୁ ତାହା ଭରଣା କରିଦେଉ-

ଥିଲେ । ପୁଅକୁ ଗାଳି ଓ ମାଡ଼ ନ ଦେବାକୁ ସେ କାଲୁଙ୍କୁ ବୁଝାଉଥିଲେ । ନାନକଙ୍କୁ ସେ ଆଲ୍ଲାଙ୍କ ଅବତାର ବୋଲି କହୁଥିଲେ ।



( ନାନକ ଭଗବାନଙ୍କୁ ଧ୍ୟାନ କରୁଛନ୍ତି )

ସମସ୍ତ ଓ କୁଆର କାହାକୁ ଅପେକ୍ଷା କରେ ନାହିଁ । କ୍ରମେ ନାନକ ବଡ଼ ହେଲେ । ତାଙ୍କ ବ୍ରତଘର କରିବାଲାଗି ବାପା ମା ସବୁ ପ୍ରକାର ଆୟୋଜନ କରି ବନ୍ଧୁ-ବାନ୍ଧବଙ୍କୁ ନିମନ୍ତ୍ରଣ କଲେ । କୁଳପୁରୋହିତ ମନ୍ତ୍ର ଉଚ୍ଚାରଣ କରି ଯେତେବେଳେ ନାନକଙ୍କୁ ପଇତା ପିନ୍ଧାଇବା ପାଇଁ ବସିଲେ, ସେ ତାହା ପିନ୍ଧିବାକୁ ରୋକ୍-ଠୋକ୍ ମନା କରିଦେଲେ ଓ କହିଲେ, "ଏ ପଇତା ତ କିଛିଦିନ ପରେ ଛିଣ୍ଡି ଯିବ, ମତେ ଏହା ପିନ୍ଧାଉଛ କାହିଁକି ? ମୋର ଏପରି ପଇତା ଦରକାର, ଯାହାକି ଛିଣ୍ଡିବ ନାହିଁ, ନିଆଁରେ ଜଳିବ ନାହିଁ କି କେବେ ମଇଳା ହେବନାହିଁ ।"

ତାହା ଶୁଣି ପୁରୋହିତ ପଚାରିଲେ—"ଏପରି ପଇତା କେଉଁଠୁ ମିଳିବ ? ନାନକ କହିଲେ—"ଯେଉଁ ପଇତା ଦୟା ରୂପକ ତୁଳା ଓ ସନ୍ତୋଷ ରୂପକ ସୂତାରୁ ତିଆରି ଓ ଯେଉଁ-ଥିରେ ସତ୍ୟ ଓ ସଂଯମ ରୂପକ ଗଣ୍ଠି ଥିବ, ସେହିପରି ପଇତା ମୋତେ ଦେଲେ ମୁଁ ପିନ୍ଧିବି" । ତାହା ଶୁଣି ବନ୍ଧୁବାନ୍ଧବ ସମସ୍ତେ ଅବାକ୍ ହୋଇଗଲେ । ବ୍ରତଘର ସେତିକିରେ ବନ୍ଦ ରହିଲା । ବନ୍ଧୁ-ବାନ୍ଧବ ବିଚାରି କଲେ ଯେ ନାନକଙ୍କୁ ବିବାହ କରିଦେଲେ ତାଙ୍କର ମତିଗତି ବଦଳିଯିବ ଓ ସେ ସଂସାର ପ୍ରତି କ୍ରମେ ଆକୃଷ୍ଟ ହେବେ । ସେଇଆ ହେଲା । ତାଙ୍କୁ ଯେତେବେଳେ ମାତ୍ର ୧୪ ବର୍ଷ, ବଟାଲା ନିବାସୀ ମୁଲାଙ୍କ ଝିଅ ସୁଲକ୍ଷଣୀଙ୍କ ସହିତ ତାଙ୍କର ବିବାହ ହେଲା; କିନ୍ତୁ ନାନକ ସଂସାର ପ୍ରତି ଆକୃଷ୍ଟ ହେଲେ ନାହିଁ । ବରଂ ଘରଦ୍ୱାର ଛାଡ଼ି ଏଣେତେଣେ ସେ କାହାକୁ ଖୋଜିବାକୁ ଲାଗିଲେ ।

ଶେଷରେ କାଲୁ ନିରାଶ ହୋଇ ପୁଅ କପରି ଘରେ ରହିବ, ସେଥିଲାଗି ଗୋଟିଏ ଦୋକାନ ଖୋଲିଲେ । ନାନକଙ୍କୁ ତାହାର ଚଳାଇବା ଦାୟିତ୍ୱ ଦେଲେ । ପାଖ ବଜାରରୁ ସଉଦା ଆଣିବା ଲାଗି ତାଙ୍କୁ ଟଙ୍କା ଦିଆଗଲା । ନାନକ ଟଙ୍କା ନେଇ ଯାଉ ଯାଉ କେତେଜଣ ସାଧୁସନ୍ନ୍ୟାସୀଙ୍କ ସହ ବାଟରେ ଦେଖାହେଲା । ସେ ଯେତେବେଳେ ଜାଣିଲେ ଯେ, ସନ୍ନ୍ୟାସୀମାନେ କିଛିଦିନ ହେଲା ଖାଇନାହାଁନ୍ତି, ତାଙ୍କ ମନରେ ଦୟା ଆସିଲା । ସେ ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ସଉଦା କିଣିବା ପାଇଁ ନେଇଥିବା ଟଙ୍କାରେ ସେ ସେମାନଙ୍କୁ ପେଟପୂରି ଖାଇବାକୁ ଦେଇ ଖାଲି ହାତରେ ଗାଁକୁ ଫେରିଲେ ।

ତାହା ଦେଖି ବାପା ପଚାରିଲେ—"ଟଙ୍କା ଦେଇଥିଲି, ସଉଦା ଆଣିଲୁ ନାହିଁ କାହିଁକି ?" ଧୀରସ୍ଥିର ଭାବେ ନାନକ ଉତ୍ତର ଦେଲେ, "ବାପା ! ସଉଦା ଆଣି ଦୋକାନରେ ବିକିବା ଦ୍ୱାରା ଯେତିକି ଲାଭ ହୋଇଥାଆନ୍ତା, ମୁଁ ନ ଆଣି ମଧ୍ୟ ତାହାଠାରୁ ବେଶୀ ଲାଭ ଉଠାଇଛି । ସେ ଟଙ୍କାରେ ଉପାସ ରହିଥିବା ସନ୍ନ୍ୟାସୀମାନଙ୍କୁ ଖାଇବାକୁ ଦେଇ ମୁଁ ଯେତିକି ପୁଣ୍ୟ ଅର୍ଜନ କରିଛି, ତାହାଠାରୁ ଅଧିକ ଲାଭ କଣ ହୋଇପାରେ ? ଏହି ଲାଭ ଦ୍ୱାରା କେବଳ ମୁଁ ନୁହେଁ, ଆମେ ସମସ୍ତେ ଏ ଜୀବନ ଓ ପର ଜୀବନରେ ଯେଉଁ ଉପକାର ପାଇବା, ତାହା ଅର୍ଥ ଲାଭରୁ ମିଳିବା ଅସମ୍ଭବ ।"

କଥିତ ଅଛି ଏହି ଉତ୍ତର ଶୁଣି ତାଙ୍କର ବାପା ତାଙ୍କୁ ଖୁବ୍ ପିଟିଥିଲେ । ଦୋକାନ ଭାଙ୍ଗିଲା । ନାନକଙ୍କୁ ତାଙ୍କ

ବାପା ଚାଷ କରିବା ପାଇଁ କହିଲେ; କିନ୍ତୁ ତାଙ୍କର ଚାଷ କରିବା ପ୍ରଣାଳୀ ଅନ୍ୟପ୍ରକାର ଥିଲା । ସେ କହୁଥିଲେ, "ମୁଁ ଶରୀରକୁ କ୍ଷେତ, ମନକୁ ଲଙ୍ଗଳ ରୂପେ ବ୍ୟବହାର କରିବାକୁ ଚାହୁଁଛି । ସେହି କ୍ଷେତରେ ଉଦ୍ୟମ ରୂପକ ଜଳ ସେଚନ କରି ଭଗବାନଙ୍କ ନାମ ରୂପୀ ବିହନ ବୁଣିବି । ସେହି ଫସଲ ସମସ୍ତଙ୍କ ଭଣ୍ଡାର ପୂର୍ଣ୍ଣ କରିବ" । ନାନକଙ୍କର ଏହିପରି କଥା ଶୁଣି ତାଙ୍କ ବାପା ପୁଣି ନିରାଶ ହୋଇପଡ଼ିଲେ । କଥାରୁ ପଦେ ହେଲେ ସେ ବୁଝି-ପାରିଲେ ନାହିଁ । ମାଆ ନାନକଙ୍କୁ ବୁଝାଇ ସୁଝାଇ କହିଲେ— "ପୁଅ ! ତୁ ବାପାଙ୍କ କଥା ମାନିବା ଉଚିତ । ନିଜ ଭିତରେ ତୁ ଏତେ ମଜ୍ଜି ରହୁଛୁ ଯେ ଲୋକେ ଭାବୁଛନ୍ତି ତୁ ପାଗଳ ହୋଇ-ଗଲୁଣି ବୋଲି । ସେମାନେ ତୋ ବିଷୟରେ ଲଗେଇ ଯୁଟେଇ ଚାରିଆଡ଼େ କହୁଛନ୍ତି ଓ ଥଟ୍ଟା ପରିହାସ ମଧ୍ୟ କରୁଛନ୍ତି" । ଏହା ଶୁଣି ନାନକ କହିଲେ—"ସାରା ସଂସାର ଲୋଭ ଏବଂ ଅହଙ୍କାର ରୂପକ ନିଆଁରେ ଜଳୁଛି ଓ ବାପା କଣ ଚାହୁଁଛନ୍ତି ଯେ ମୁଁ ଖାଲି ମୋର ପରିବାର କଥା ଚିନ୍ତା କରିବି ? କହିଲୁ ମାଆ, ମୁଁ କିପରି ପରମେଶ୍ୱରଙ୍କର ଏହି ସୁନ୍ଦର ସଂସାରକୁ ଜଳିବାକୁ ଦେବି ?" ମାଆ କିନ୍ତୁ ତାଙ୍କର ଏହି କଥାର ମର୍ମ ବୁଝିପାରିଲେ ନାହିଁ । ସେ ଜାଣିପାରିଲେ ନାହିଁ ଯେ ନାନକଙ୍କର ପ୍ରକୃତ କଷ୍ଟ କଣ ଓ ସେ କେଉଁ ନିଆଁ କଥା କହୁଛନ୍ତି ।

ପରିବାରର ମୁରବୀମାନେ ଭାବିଲେ ଯେ ନିଶ୍ଚୟ ନାନକଙ୍କର କିଛି ମାନସିକ ରୋଗ ହୋଇଛି । ସମସ୍ତେ ପରାମର୍ଶ ଦେଲେ ଯେ ତାଙ୍କୁ କୌଣସି ବୈଦ୍ୟ ଡକାଇ ଦେଖାଇବା ପାଇଁ ।

ସେଇଆ ହେଲା । ବାପା କାଲୁ ମେହେଟା ଗାଁର ଜଣାଶୁଣା କବି-
ରାଜଙ୍କୁ ଡକାଇଲେ । ଯେତେବେଳେ କବିରାଜ ନାନକଙ୍କର



( କବିରାଜ ନାନକଙ୍କ ନାଡ଼ି ପରୀକ୍ଷା କରୁଅଛନ୍ତି )

ହାତ ଧରି ନାଡ଼ି ପରୀକ୍ଷା କଲେ, ନାନକ ହସି କରି କହିଲେ—
"ବୈଦ୍ୟରାଜ ! ନାଡ଼ି କ'ଣ ଦେଖୁଛନ୍ତି, ମୋର ଶରୀରରେ

କୌଣସି କଷ୍ଟ ହେଉ ନାହିଁ, କଷ୍ଟ ହେଉଛି ମୋର ଆତ୍ମାକୁ ।" ଆଶ୍ଚର୍ଯ୍ୟ ହୋଇ ବୈଦ୍ୟ ପଚାରିଲେ, "ତୁମର ଆତ୍ମାକୁ କି କଷ୍ଟ ହେଉଛି ?" ନାନକ କହିଲେ—"ମୁଁ ମୋର ପରମାତ୍ମାଙ୍କ ଠାରୁ କ୍ରମେ ଦୂରେଇ ଯାଉଛି । ଏହା ହିଁ ମୋର ସବୁଠାରୁ ବଡ଼ କଷ୍ଟ । ତାଙ୍କ ସହିତ ମିଶିବାର ଇଚ୍ଛା ମୋତେ ବାରମ୍ବାର ବ୍ୟସ୍ତ କରୁଛି । ସେଥିଲାଗି ମନରେ କଷ୍ଟ ହେଉଛି" । ତାହା ଶୁଣି ବୈଦ୍ୟରାଜଙ୍କ ମୁଣ୍ଡ ତାଙ୍କ ପାଖରେ ନଇଁ ଗଲା । ସେ କହିଲେ—"ତୁମ ରୋଗର ଔଷଧ ତ ସ୍ୱୟଂ ତୁମ ପାଖରେ ଅଛି । ମୁଁ ଆଉ କି ଔଷଧ ଦେବି" ? ବୈଦ୍ୟଙ୍କର ଏହି ଉତ୍ତର ଶୁଣି ନାନକଙ୍କ ବାପ ମାଆ ବହୁତ ନିରାଶ ହୋଇପଡ଼ିଲେ ଓ ତାଙ୍କୁ କହିଲେ ଯେ ତାଙ୍କର ବାପା ମାଆ ହିସାବରେ ପୁଅ ଉପରେ ଅଧିକାର ଅଛି । ଏହା ଶୁଣି ନାନକ କହିଥିଲେ, "ଈଶ୍ୱରଙ୍କ ବ୍ୟତୀତ କିଏ ମୋର ବାପା ଆଉ କିଏ ମୋର ମା' ମୁଁ ଜାଣେନା । ମୁଁ କେଉଁଠୁ ଆଉ କେଉଁ କାମ ପାଇଁ ସଂସାରକୁ ଆସିଛି ତାହା ମଧ୍ୟ ମୁଁ ଜାଣିନାହିଁ ।"

ତାଙ୍କର ଏପରି ଅବସ୍ଥା ଦେଖି ସମସ୍ତେ ଭାବିଲେ ଯେ, ନାନକଙ୍କୁ ଅନ୍ୟ ଜାଗାକୁ ପଠାଇଦେଲେ ବୋଧହୁଏ ତାଙ୍କର ମନ ବଦଳିଯାଇ ପାରେ । ତାଙ୍କର ଭଉଣୀ ନାନକୀ ସୁଲତାନ-ପୁରର ନବାବ ଦୌଲତ୍ ଖାଁଙ୍କର ଜଣେ କର୍ମଚାରୀ ଜୟ-ରାମକୁ ବିବାହ କରିଥିଲେ । ତେଣୁ ସମସ୍ତେ ଭାବିଲେ ଯେ କିଛିଦିନ ପାଇଁ ନାନକଙ୍କୁ ଭଉଣୀ ଭିଣୋଇଙ୍କ ପାଖକୁ ପଠାଇ-ଦେବା ଭଲ । ସେଇଆ ହେଲା । ନାନକ ମଧ୍ୟ ସେଠାକୁ ଯିବାକୁ ରାଜି ହେଲେ । ଯେତେବେଳେ ନାନକ ସୁଲତାନ୍‌ପୁରରେ ପହଞ୍ଚିଲେ ତାଙ୍କର ଭିଣୋଇ ତାଙ୍କୁ ନବାବଙ୍କ ପାଖକୁ ନେଇ-

ଗଲେ । ନବାବ ମଧ୍ୟ ନାନକଙ୍କ ବ୍ୟକ୍ତିତ୍ୱ, ତାଙ୍କର ସରଳ ଓ ନିର୍ମଳ ଦୃଷ୍ଟିଭଙ୍ଗୀ ଦ୍ୱାରା ପ୍ରଭାବିତ ହୋଇ ତାଙ୍କୁ ମୋଦିଖାନାର ଅଧିକାରୀ ରୂପେ ନିଯୁକ୍ତ କଲେ । ସେତେବେଳେ ମୋଦି-ଖାନାରେ ସରକାରୀ କର୍ମଚାରୀମାନଙ୍କୁ ଖାଦ୍ୟଶସ୍ୟ ବଣ୍ଟାଯାଉ-ଥିଲା । ସେ ସେଠାରେ ତାଙ୍କର କାମ ଏତେ ଭଲ ଭାବରେ ତୁଲାଇଲେ ଯେ ସମସ୍ତେ ତାଙ୍କୁ ପ୍ରଶଂସା କଲେ । ମାସକୁ ମାସ ସେ ଯେଉଁ ବେତନ ପାଉଥିଲେ, ସେଥିରୁ କିଛି ଅଂଶ ନିଜ ପାଇଁ ଖର୍ଚ୍ଚ କରି ଅବଶିଷ୍ଟ ସାଧୁସନ୍ଥ ଓ ଅଭାବୀ ଲୋକମାନଙ୍କ ମଧ୍ୟରେ ବାଣ୍ଟି ଦେଉଥିଲେ ।

ଦିନକର ଘଟଣା । ନାନକ ପାଖରେ ବହିଯାଉଥିବା ନଈକୁ ଗାଧୋଇବାକୁ ଗଲେ । ସେ ପ୍ରାୟ ସବୁଦିନ ସେହି ନଈକୁ ଗାଧୋଇବାକୁ ଯାଆନ୍ତି; କିନ୍ତୁ ତିନିଦିନ ବିତିଗଲା, ହେଲେ ସେ ଆଉ ଫେରିଲେ ନାହିଁ । ଲୋକେ ଭାବିଲେ ଯେ ସେ ନିଶ୍ଚୟ ନଈରେ ବୁଡ଼ି ମରିଛନ୍ତି । ପ୍ରକୃତରେ ସେ ଏହି ତିନିଦିନ ନଦୀ-କୂଳରେ ଗଭୀର ଧ୍ୟାନମଗ୍ନ ଥିଲେ ଓ ସେହି ଧ୍ୟାନ ବଳରେ ସେ ପରମାତ୍ମାଙ୍କର ସତ୍ତା ଅନୁଭବ କରିଥିଲେ । ତାଙ୍କ ଲିଖିତ "ପ୍ରାଚୀନ ଜନ୍ମସାକ୍ଷୀ" ନାମକ ଗ୍ରନ୍ଥରେ ଲେଖାଅଛି ଯେ ପରମାତ୍ମା ନିଜେ ତାଙ୍କୁ ଆଶୀର୍ବାଦ ଦେଇ କହିଥିଲେ, "ହେ ନାନକ ! ମୁଁ ସବୁ-ବେଳେ ତୁମ ପାଖରେ ଅଛି । ତୁମେ ସଂସାରର ଲୋକମାନଙ୍କୁ ସତ୍‌ପଥ ଦେଖାଅ ।"

ନାନକ ଯେତେବେଳେ ଫେରିଆସିଲେ, ସେତେବେଳେ ତାଙ୍କ ମୁଖମଣ୍ଡଳରେ ଦିବ୍ୟ ଜ୍ୟୋତି ଫୁଟିଉଠୁଥିଲା ଏବଂ ତାଙ୍କ ମୁହଁରୁ ବାରମ୍ବାର ବାହାରୁଥିଲା ଏହି କଥା—"ନା କୋଇ ହିନ୍ଦୁ

ନା କୋଇ ମୁସଲମାନ" । ଅର୍ଥାତ୍ ଜନ୍ମରୁ କେହି ହିନ୍ଦୁ କିମ୍ବା ମୁସଲମାନ ନୁହନ୍ତି । ସବୁ ମଣିଷ ସମାନ । ଏହି କଥା ହିନ୍ଦୁ



( ନଦୀ କୂଳରେ ଧ୍ୟାନରତ ନାନକ )

ତଥା ମୁସଲମାନ୍ କାହାକୁ ଭଲ ଲାଗୁ ନଥିଲା । ନଗରର କାଜୀ ନାନକଙ୍କୁ ଡାକି ପଚାରିଥିଲେ, "ତୁମେ କହୁଛ ଯେ କେହି ହିନ୍ଦୁ

ନୁହଁନ୍ତି କି ମୁସଲମାନ୍ ନୁହଁନ୍ତି" ତାହା ହେଲେ ତୁମେ କ'ଣ ? ନାନକ ଉତ୍ତର ଦେଲେ, "କିଏ ମୋତେ ଭୂତ, ଆଉ କିଏ ବା ମୋତେ ବେତାଳ ବୋଲି କହୁଛନ୍ତି; କିନ୍ତୁ ମୁଁ ସେହି ପରମେଶ୍ୱରଙ୍କ ନାମରେ ପାଗଳ ହୋଇଛି । ତାଙ୍କ ବିନୁ ମୁଁ ଅନ୍ୟ କାହାକୁ ଜାଣେ ନାହିଁ" ।

କିଛିଦିନ ପରେ ନାନକ ମୋଦିଖାନା ଚାକିରୀ ଛାଡ଼ିଦେଲେ । ନବାବ ତାଙ୍କୁ କାରଣ ପଚାରିବାରୁ ସେ କହିଲେ, "ମୁଁ ଏବେ ସେହି ମାଲିକଙ୍କ ପାଖରେ ଚାକିରୀ କରିବି, ଯାହାଙ୍କ ଆଗରେ ଦେବତା, ମଣିଷ ସମସ୍ତେ ହାତ ଯୋଡ଼ି ଛିଡ଼ା ହୋଇଥିବେ । ଯିଏ ଯାହା ମାଗୁଥିବ, ସେ ତାହା ଦେଉଥିବେ । ତାଙ୍କ ଛଡ଼ା ମୋର ମାଲିକ ଏ ଦୁନିଆଁରେ କେହି ନାହାନ୍ତି" । ଏତିକି କହି ସେ ସୁଲତାନପୁରରୁ ବିଦାୟ ନେଇଥିଲେ ।

ସମୟକ୍ରମେ ନାନକଙ୍କର ଖ୍ୟାତି ଚାରିଆଡ଼େ ବ୍ୟାପିଗଲା । ଲୋକେ ତାଙ୍କୁ ଭିନ୍ନ ଭିନ୍ନ ନାମରେ ଡାକିବାକୁ ଲାଗିଲେ । କିଏ ବାବା ଫକୀର ନାନକ ବୋଲି ଡାକିଲେ । ଅନେକ ମଧ୍ୟ ତାଙ୍କୁ ଗୁରୁ ନାନକ ବୋଲି ସମ୍ବୋଧନ କଲେ ।

ନିଜର ମୁସଲମାନ୍ ବନ୍ଧୁ ମରଦାନାଙ୍କୁ ସାଙ୍ଗରେ ନେଇ ସେ କ୍ରମେ ବଣ ଜଙ୍ଗଲ, ମରୁଭୂମି ଓ ପଞ୍ଜାବର ଦକ୍ଷିଣ ପଶ୍ଚିମଅଞ୍ଚଳକୁ ଯାତ୍ରାକଲେ । ଯାତ୍ରା ସମୟରେ ଗୁରୁ ନାନକ ସବୁବେଳେ ଗାଁ ବାହାରେ ରହୁଥିଲେ ଓ ଯାହା ଫଳମୂଳ ମିଳୁଥିଲା ସେଥିରେ ସନ୍ତୁଷ୍ଟ ହେଉଥିଲେ; କିନ୍ତୁ ତାଙ୍କର ସାଙ୍ଗ ମରଦାନା ଖାଇବା ପିଇବା ପ୍ରତି ଅଧିକ ଲୋଭ କରୁଥିବାରୁ ତାଙ୍କୁ ଏସବୁ ଭଲ ଲାଗୁ ନଥିଲା ।

ଥରେ ଗୁରୁ ନାନକ ସେଠିକାର ଏକ ଗାଁକୁ ଯିବାକୁ ତାଙ୍କୁ ଅନୁମତି ଦେଲେ । ସେ ଖୁବ୍ ଖୁସିହୋଇ ଗାଁକୁ ଯାଇଥିଲେ । ଗାଁର ଲୋକମାନେ ମଧ୍ଯ ତାଙ୍କୁ ଭଲ ଖାଇବା ପିଇବା ଦେଇ ସନ୍ତୁଷ୍ଟ କରିବା ସଙ୍ଗେ ସଙ୍ଗେ ସାଙ୍ଗରେ ଅନେକ ପ୍ରକାର ଖାଇବା ଜିନିଷ ଦେଇଥିଲେ । ସେ ସେଠାରୁ ସବୁ ଜିନିଷ ବାନ୍ଧି ଏକ ଗଣ୍ଠିରି କରି ନାନକଙ୍କ ପାଖରେ ପହଞ୍ଚିଲେ । ଏତେ ଗୁଡ଼ାଏ ଜିନିଷ ଦେଖି ନାନକ ହସିକରି ପଚାରିଲେ– "ଆମେ ତ ସଂସାର ଭିତରେ ରହି ତ୍ୟାଗ କରିବା ଲାଗି ଉପଦେଶ ଦେଉଛୁ, ହେଲେ ତୁମେ ତ୍ୟାଗ ପଥରେ ଚାଲି ମଧ୍ଯ ଏତେ ଲୋଭ କରୁଛ କାହିଁକି ? ଗ୍ରାମବାସୀ ଯାହା ସବୁ ଦେଇଛନ୍ତି ତାକୁ ଫିଙ୍ଗିଦିଅ ।"

ମର୍ଦାନାଙ୍କର ଇଚ୍ଛା ନଥିଲେ ମଧ୍ଯ ଗୁରୁଙ୍କ ଆଦେଶ ହେତୁ ବାଧ୍ଯହୋଇ ସବୁ ଜିନିଷ ଫୋପାଡ଼ିଦେଲେ । ଗୁରୁ ନାନକ ତାଙ୍କୁ ସେଦିନ ଉପଦେଶ ଦେଇ କହିଥିଲେ ଯେ, ଯେଉଁ ଲୋକ ଦାନ କରେ, ସେ ନିଜ ଧର୍ମ ବଳରେ ଅର୍ଜିତ ଧନ ଦାନ ଦେବା ଉଚିତ ଏବଂ ଯିଏ ଦାନ ଗ୍ରହଣ କରେ, ସେ କେବଳ ନିଜର ଯେତିକି ଆବଶ୍ୟକ, ସେତିକି ନେବା ଉଚିତ୍" । ତାହା ଶୁଣି ମରଦାନାଙ୍କ ମୁଣ୍ଡ ଲାଜରେ ନଇଁ ପଡ଼ିଥିଲା ।

ଯାତ୍ରା କ୍ରମରେ ଗୁରୁ ନାନକ ଏବଂ ମରଦାନା ସୈଦ୍ପୁରରେ ଯାଇ ପହଞ୍ଚିଲେ । ସେହି ସ୍ଥାନଟି ଏବେ ପାକିସ୍ଥାନର ଗୁଜରାଂ-ବାଲା ଜିଲ୍ଲାରେ ଅବସ୍ଥିତ । ସେଠାରେ ଲାଲୋ ନାମକ ଏକ ବଢ଼ଇ ଘରେ ସେ ଅତିଥି ହେଲେ । ନଗର ମଧ୍ଯରେ ଏହି

କଥା ଚାରିଆଡ଼େ ବ୍ୟାପିଗଲା ଯେ କ୍ଷତ୍ରିୟବଂଶର ଏକ ସାଧୁ ଶୂଦ୍ର ଘରେ ଅତିଥି ହୋଇ ସେଠାରେ ଭୋଜନ କରୁଛନ୍ତି । ଏହି କଥା ଉଚ୍ଚ ଜାତିର ଜଣେ ସରକାରୀ କର୍ମଚାରୀ ଭାଗୋଙ୍କ ଦୃଷ୍ଟିକୁ ଆସିଲା ।

ଭାଗୋ ପିତୃପକ୍ଷ ପାଳନ କରୁଥିବାରୁ ବହୁତ ଦୂରରୁ ସାଧୁସନ୍ଥମାନେ ଆସି ତାଙ୍କ ଘରେ ଭୋଜନ କରୁଥାନ୍ତି । ଗୁରୁ ନାନକ ଶୂଦ୍ର ତଥା ଛୋଟ ଜାତିଙ୍କ ଘରେ ଖାଇବା କଥା ଶୁଣି ତାଙ୍କୁ ସେ ନିମନ୍ତ୍ରଣ ଜଣାଇଲେ; କିନ୍ତୁ ନାନକ ତାଙ୍କ ଘରକୁ ଯିବାକୁ ମନା କରିଦେଇ କହିଲେ— ନୀଚଜାତିଠାରୁ ଯିଏ ନୀଚ ଓ ତାଙ୍କଠାରୁ ଆଉ ଯିଏ ନୀଚ, ନାନକ ସବୁବେଳେ ସେମାନଙ୍କ ସାଥିରେ ରହେ, କାରଣ ସେମାନଙ୍କର ବଡ଼ଙ୍କ ସହିତ କୌଣସି ଦେବା ନେବା ନଥାଏ ।”

ତାହା ଶୁଣି ସରକାରୀ କର୍ମଚାରୀ ଜଣକ ଭାରି ରାଗିଗଲେ । ତାଙ୍କ ଚାକରକୁ ସେ କହିଲେ, “ଯଦି ନାନକ ଭଲରେ ନ ଆସୁଛନ୍ତି, ତାଙ୍କୁ ବାଧ୍ୟ କରି ଏଠାକୁ ଆଣ ।” ବହୁତ କହିଲା ପରେ ନାନକ ଭାଗୋଙ୍କ ଘରକୁ ଆସିଲେ । ଅନ୍ୟ ସାଧୁସନ୍ଥଙ୍କ ପରି ତାଙ୍କ ପାଇଁ ଖାଇବାକୁ ବଢ଼ା ହେଲା । ହେଲେ ସେ ଖାଇବାକୁ ମନା କରିଦେଲେ । ତାହା ଶୁଣି ଭାଗୋ କହିଲେ-- “ଅଛୁଆଁ ଜାତିଙ୍କ ଘରେ ଆପଣ ଖୁସିରେ ଖାଉଛନ୍ତି । ହେଲେ ମୁଁ ତ ଉଚ୍ଚଜାତି ମୋ ଘରେ ଖାଇବାକୁ ମନାକରି ଦେଉଛନ୍ତି କାହିଁକି ?” ଏହା ଶୁଣି ନାନକ ଉତ୍ତର ଦେଲେ—“ଲାଲୋ ଛୋଟ ଜାତିର ଲୋକ ହେଲେ କ’ଣ ହେବ, ସେ ନିଜ ଝାଳବୁହା ଧନରେ ସାଧୁସନ୍ଥଙ୍କ ଚର୍ଚ୍ଚା କରୁଛି । ତୁମେ ତ ଅସହାୟ ଗରିବଙ୍କ ତଣ୍ଟି ଚିପି ଧନ ଉପାର୍ଜନ କରୁଛ । ସେପରି

ଧନ ମୁଁ ଭୋଜନ ଆକାରରେ ଗ୍ରହଣ କରିବା ଠିକ୍ ନୁହେଁ ।" ଏହା କହି ସେ ନିଜ ପାଖରେ ଥିବା ଲାଲୋ ଘରର ଶୁଖିଲା ରୁଟି ଓ ଭାଗୋଙ୍କ ଘରେ ବଢ଼ାଯାଇଥିବା ପଲାଉ ଦୁଇ ହାତରେ ଧରି ଚପୁଡ଼ି ଦେଲେ । ରୁଟିରୁ ଦୁଧ ଓ ପଲାଉରୁ ରକ୍ତ ନିଗିଡ଼ି ପଡ଼ିଲା । ତାହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ।



( ଦୁଇ ହାତରେ ନାନକ ରୁଟି ଓ ପଲାଉ ଚପୁଡୁଛନ୍ତି )

ଧନ ମୁଁ ଭୋଜନ ଆକାରରେ ଗ୍ରହଣ କରିବା ଠିକ୍ ନୁହେଁ ।" ଏହା କହି ସେ ନିଜ ପାଖରେ ଥିବା ଲାଲୋ ଘରର ଶୁଖିଲା ରୁଟି ଓ ଭାଗୋଙ୍କ ଘରେ ବଢ଼ାଯାଇଥିବା ପଲାଉ ଦୁଇ ହାତରେ ଧରି ଚିପୁଡ଼ି ଦେଲେ । ରୁଟିରୁ ଦୁଧ ଓ ପଲାଉରୁ ରକ୍ତ ନିଗିଡ଼ି ପଡ଼ିଲା । ତାହା ଦେଖି ସମସ୍ତେ ଆଶ୍ଚର୍ଯ୍ୟ ହୋଇ-ଗଲେ ।



( ଦୁଇ ହାତରେ ନାନକ ରୁଟି ଓ ପଲାଉ ଚିପୁଡୁଛନ୍ତି )

ସେହି ଗାଁରେ କିଛିଦିନ ରହିଲାପରେ ନାନକ ମରଦାନାଙ୍କ ସହିତ ଅନ୍ୟତ୍ର ଯାତ୍ରା କଲେ । ସେ ଯେଉଁଠିକୁ ଯାଉଥିଲେ ଲୋକମାନଙ୍କୁ ସର୍ବଦା ଈଶ୍ୱରଙ୍କୁ ଭକ୍ତି କରିବା ଓ ସବୁ ମଣିଷଙ୍କୁ ସମାନ ଦୃଷ୍ଟିରେ ଦେଖିବା ପାଇଁ ଉପଦେଶ ଦେଉଥିଲେ । ଏହାପରେ ସେ ଦୁହେଁ ମୁଲତାନ ଅଞ୍ଚଳର ତୁଲମ୍ବେ ନଗରରେ ଯାଇ ପହଞ୍ଚିଲେ । ସେଠାରେ ସେ ହଠାତ୍ ଏକ ଠକ ହାବୁଡ଼ରେ ପଡ଼ିଲେ । ସେ ଠକ ସବୁବେଳେ ସାଧୁବେଶ ଧରି ପଥିକମାନଙ୍କୁ ପାଖରେ ଥିବା ମନ୍ଦିର ଓ ମସଜିଦକୁ ଅତିଥି ରୂପେ ଡାକି ନେଇ ସେମାନଙ୍କୁ ପ୍ରଥମେ ବହୁତ ଚର୍ଚ୍ଚା କରୁଥିଲା । ସେଠାରେ ରାତ୍ରି ଯାପନ କରିବା ପାଇଁ କହୁଥିଲା । ରାତିରେ ଶୋଇଥିଲା ବେଳେ ସେ ଯାତ୍ରୀମାନଙ୍କୁ ହତ୍ୟାକରି ଏକ କୂଅ ଭିତରେ ତାଙ୍କ ଶବ ପକାଇଦେଉଥିଲା । ସେମାନଙ୍କର ସବୁ କିନିଷପତ୍ର ଲୁଣ୍ଠି ନେଉଥିଲା । ପୁଣି ସକାଳ ହେଲେ ସାଧୁବେଶ ଧରି ଯାତ୍ରୀମାନଙ୍କୁ ଅପେକ୍ଷା କରୁଥିଲା ।

ଯେତେବେଳେ ସେହି ଠକ ଗୁରୁ ନାନକ ଏବଂ ମର୍ଦାନାଙ୍କୁ ଦେଖିଲା ସେ ତା'ର ଲୋକମାନଙ୍କୁ କହିଲା, "ଦେଖ ଏମାନେ ଧନୀଲୋକ ଭଳି ଦେଖାଯାଉଛନ୍ତି । ଏମାନଙ୍କୁ ଭଲଭାବରେ ଚର୍ଚ୍ଚା କର ।" ତା'ର ଅନୁଚରମାନେ ସେଇଆ କଲେ । ରାତି ହେଲା । ସେମାନେ ଗୁରୁନାନକ ଓ ମରଦାନାଙ୍କର ଶୋଇବା ବ୍ୟବସ୍ଥା କଲେ । ନାନକ ସେମାନଙ୍କର କୌଶଳ ବୁଝିପାରି କହିଲେ, "ମୁଁ ପ୍ରଥମେ ଭଗବାନ୍‌ଙ୍କର ନାମ ସ୍ମରଣ କରିବି, ତାପରେ ଶୋଇବି ।"

ଗୁରୁ ନାନକଙ୍କ ସହିତ ସେହି ଠକ ଓ ତା'ର ଲୋକମାନେ ମଧ୍ୟ ସେଠାରେ ବସିରହିଲେ ନାନକଙ୍କର ଭଜନ ଶୁଣିବା



( ନାନକଙ୍କ ଭଜନ ଶୁଣି ଠକର ହୃଦୟ ବଦଳିଲା )

ପାଇଁ । ନାନକଙ୍କ ଭଜନ ଶୁଣିଲାପରେ ହଠାତ୍ ଠକର ହୃଦୟ ତରଳିଗଲା । ଭଜନ ଛଳରେ ତାଙ୍କର ମଧୁର ଉପଦେଶ

ଠକର ଆତ୍ମାକୁ ଏପରି ଭାବରେ ଛୁଇଁ ପାରିଥିଲା ଯେ, ସେ ତାର ପାପକର୍ମ ଯୋଗୁଁ ଗଭୀର ଅନୁତାପ କରିବାକୁ ଲାଗିଲା । କିଛି ସମୟ ପରେ ସେ ନାନକଙ୍କ ପାଦତଳେ ପଡ଼ି କାନ୍ଦି କହିଲା, "ହେ ସ୍ୱାମୀ ! ଆପଣ ମୋତେ ନୂଆ ଜୀବନ ଦାନ କଲେ । ଏବେ କୁହନ୍ତୁ ଯେ ମୁଁ କରିଥିବା ପାପକର୍ମର ପ୍ରାୟଶ୍ଚିତ୍ତ କରିବି କିପରି ?" ଗୁରୁନାନକ କହିଲେ—"କେବଳ ଦୁଇଟି ଉପାୟ କଲେ ଈଶ୍ୱର ପାପର କ୍ଷମା କରିଥାନ୍ତି । ତାହା ହେଉଛି ନିଜର ଅପରାଧ ସ୍ୱୀକାର କରିବା ଓ ତା'ର ପ୍ରାୟଶ୍ଚିତ୍ତ କରିବା ।"

ତାହା ଶୁଣି ଠକ କହିଲା—"ମୁଁ ନିଜ ଅପରାଧ ସ୍ୱୀକାର କରୁଅଛି । ମୁଁ ବହୁ ଲୋକଙ୍କ ଧନସମ୍ପତ୍ତି ଲୁଟ୍ କରିଅଛି ଓ ବହୁ ନରହତ୍ୟା କରିଅଛି । ତାହାଦ୍ୱାରା ବିପୁଳ ଧନସମ୍ପତ୍ତିର ମାଲିକ ହୋଇପାରିଅଛି । ଏବେ କୁହନ୍ତୁ, ସେହି ପାପର ପ୍ରାୟଶ୍ଚିତ୍ତ କରିବି କିପରି ?" ଗୁରୁନାନକ କହିଲେ—"ତୁମେ ଅନ୍ୟାୟ ଉପାୟରେ ଯେଉଁ ଧନ ଅର୍ଜନ କରିଛ, ତାହା ଈଶ୍ୱରଙ୍କ ନାମରେ ଗରିବଲୋକଙ୍କ ମଧ୍ୟରେ ବାଣ୍ଟିଦିଅ ।" ଠକ ଜଣଙ୍କ ଗୁରୁଙ୍କ ଆଦେଶ ମାନି ତା'ର ସମସ୍ତ ଧନସମ୍ପତ୍ତି ଗରୀବ ଓ ନିଃସହାୟ ଲୋକଙ୍କୁ ବାଣ୍ଟିଦେଇଥିଲା । ସେ କ୍ରମେ ଭଗବାନଙ୍କ ପରମଭକ୍ତ ହୋଇପାରିଥିଲା ।

ତା'ପରେ ନାନକ କୁରୁକ୍ଷେତ୍ର ଅଭିମୁଖେ ଯାତ୍ରା କରିଥିଲେ । ସେତିକିବେଳେ ସୂର୍ଯ୍ୟୋପରାଗ ଯୋଗୁଁ ସେଠାରେ ବହୁଲୋକଙ୍କ ସମାଗମ ହୋଇଥିଲା । ସେଠି ତାଙ୍କର ଜଣେ ଭକ୍ତ

ତାଙ୍କ ପାଇଁ ହରିଣ ମାଂସ ରାନ୍ଧି ଖାଇବା ବ୍ୟବସ୍ଥା କରିଥିଲେ । ତାହା ଜାଣି ନାନକ ମାଂସ ଖାଇବାକୁ ସିଧାସଳଖ ମନା କରି କହିଲେ—"ଏହା ଖାଇବା ମହାପାପ । କାରଣ ମାଂସ ଖାଇଲେ ମନରେ ବିକାର ଜାତ ହୋଇଥାଏ ।" ଯେ ପର୍ଯ୍ୟନ୍ତ ଏହି ମାଂସର ମୋହ ମଣିଷକୁ ନ ଛାଡ଼ୁଛି, ସେ ପର୍ଯ୍ୟନ୍ତ ସେ ମନରେ ଧର୍ମଭାବ ଆଣିପାରିବ ନାହିଁ । ମାଂସ ନଖାଇ ମଧ୍ୟ ମଣିଷ ଖୁବ୍ ସୁସ୍ଥ, ସବଳ ଓ ଜ୍ଞାନୀ ହୋଇପାରିବ ।" ତା ଶୁଣି ଭକ୍ତ ଜଣକ ନିରାଶ ହୋଇଥିଲେ ।

କିଛିଦିନ ପରେ ଗୁରୁନାନକ ପାନିପଥରେ ଯାଇ ପହଞ୍ଚିଲେ । ସେଠାରେ ଶାହସରଫ୍ ନାମକ ଜଣେ ପ୍ରସିଦ୍ଧ ସୁଫି ସନ୍ନ୍ୟାସୀ ରହୁଥିଲେ । ତାଙ୍କ ସହିତ ନାନକଙ୍କର ଭେଟ ହେଲା । ସୁଫି ସନ୍ନ୍ୟାସୀ ଜଣକ ତାଙ୍କୁ ପଚାରିଥିଲେ—"ଫକୀର ହୋଇ ଆପଣ ଗୃହସ୍ଥଙ୍କ ପରି ଲୁଗା ପିନ୍ଧୁଛନ୍ତି । ସନ୍ନ୍ୟାସୀଙ୍କ ପରି ଲଣ୍ଡିତ ମସ୍ତକ ହୋଇନାହାନ୍ତି କାହିଁକି ?" ନାନକ ଉତ୍ତର ଦେଲେ "ଯଦି ଲଣ୍ଡା ହେବ ତାହେଲେ ପ୍ରଥମେ ମନକୁ ସଫାକରିବା ଦରକାର । ଯେଉଁ ମଣିଷ ପରମେଶ୍ୱରଙ୍କ ନିକଟରେ ନିଜର ସ୍ୱାର୍ଥ ଓ ଅହଙ୍କାର ତ୍ୟାଗକରେ, ସେ ଯେଉଁ ପ୍ରକାର ବସ୍ତ୍ର ପିନ୍ଧୁନା କାହିଁକି ଭଗବାନ୍ ତାହା ସ୍ୱୀକାର କରିଥାନ୍ତି । ଯିଏ ନିଜ ମନକୁ ଜୟ କରିଛି, ସୁଖ ଦୁଃଖରେ ବିଚଳିତ ନ ହୋଇଛି ତାଙ୍କୁ ସମସ୍ତ ପ୍ରକାର ବସ୍ତ୍ର ସୁନ୍ଦର ଦିଶୁଥାଏ ।"

ଶାହସରଫ ପୁଣି ପଚାରିଲେ—"ଆପଣ କେଉଁ ଜାତିର ଲୋକ ? କେଉଁ ମତ ଅନୁସରଣ କରନ୍ତି ? ଆପଣଙ୍କ ଜୀବନର

ମାର୍ଗ କ'ଣ ?" ନାନକ କହିଥିଲେ, "ସତ୍ୟର ମାର୍ଗରେ ମୁଁ ଯାତାୟାତ କରିଥାଏ । ତାହା ହିଁ ମୋର ମତ । ନିଆଁ ଓ ପବନ ପରି ମୋର ଜାତ । ଯେପରି ନିଆଁ ଓ ପବନ ସମସ୍ତଙ୍କ ନିକଟରେ ସମାନ, ଶତ୍ରୁ ମିତ୍ର ମଧ୍ୟରେ ଭେଦାଭେଦ ରଖେନାହିଁ, ମୋର ଜାତ ବିଶ୍ୱାସ ଠିକ୍ ସେହିପରି ।" ଶାହସରଫ୍ ପୁଣି ପଚାରିଲେ —ପ୍ରକୃତ ଫକୀର କିଏ ? ନାନକ କହିଲେ—"ଯେ ସଂସାରରେ ରହି ସଂସାର ବନ୍ଧନରୁ ମୁକ୍ତ ଅର୍ଥାତ୍ ମୋହମାୟାରୁ ମୁକ୍ତ ରହେ, ଯେ ଈଶ୍ୱରଙ୍କୁ ସବୁସ୍ଥାନରେ ଦେଖେ, ସେ ହିଁ ହେଉଛି ପ୍ରକୃତ ଫକୀର ।" ତାହା ଶୁଣି ଶାହସରଫ୍ ନାନକଙ୍କୁ ବହୁତ ପ୍ରଶଂସା-କଲେ ଓ କହିଲେ—"ହେ ଈଶ୍ୱରଙ୍କ ପ୍ରିୟପୁତ୍ର । ଆପଣଙ୍କ ଜରିଆରେ ମୁଁ ଈଶ୍ୱରଙ୍କ ଦର୍ଶନ ପାଇଲି । ଆଜି ମୋ ଜୀବନ ଧନ୍ୟହେଲା ।"

ବହୁପଥ ଅତିକ୍ରମ କଲାପରେ ନାନକ ହରିଦ୍ୱାରରେ ପହଞ୍ଚିଲେ । ସେଠାରେ ସେ ଦେଖିଲେ ଯେ ଲୋକମାନେ ପୂର୍ବଦିଗକୁ ଚାହିଁ ପାଣି ଟେକୁଛନ୍ତି । ସେମାନଙ୍କୁ ପଚାରିବାରୁ ସେମାନେ କହିଲେ ଯେ ନିଜର ପିତୃପୁରୁଷଙ୍କ ଆତ୍ମାର ଶାନ୍ତି ଓ ମୁକ୍ତି ପାଇଁ ସେମାନେ ଏପରି କରୁଛନ୍ତି । ଏହା ଶୁଣି ଗୁରୁନାନକ ଅଳ୍ପ ହସି ହଠାତ୍ ପଶ୍ଚିମଦିଗକୁ ମୁହଁକରି ପାଣି ତୋଳିବା ଆରମ୍ଭ କଲେ । ତାଙ୍କର ଏହି ଓଲଟା କାର୍ଯ୍ୟ ଦେଖି ଲୋକମାନେ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—"ଆରେ, ଆପଣ ଏ କ'ଣ କରୁଛନ୍ତି ?" ନାନକ ଉତ୍ତର ଦେଲେ—ମୁଁ ପଶ୍ଚିମ ଦିଗରେ ରହୁଛି । ସେଠାରେ ମୋର ଗୋଟିଏ କ୍ଷେତ ଅଛି, ଯେଉଁଠାରେ ଏ ବର୍ଷ ଭଲବର୍ଷା ହୋଇ ନାହିଁ ; ତେଣୁ ମୁଁ

ସେହି ଦିଗକୁ ପାଣି ଦେଉଛି ।" ଏହା ଶୁଣି ସେମାନେ ହସିଉଠି କହିଲେ—"ଆପଣ କ'ଣ ବାଇଆ ହେଲେ । ଏଠି ପାଣି



( ନାନକ ପଶ୍ଚିମ ଦିଗକୁ ମୁହଁକରି ପାଣି ଟେକୁଛନ୍ତି )

ଟେକିଲେ ଦୂରରେ ଥିବା ଆପଣଙ୍କ କିଆରୀରେ କ'ଣ ଏହା ପହଞ୍ଚି ପାରିବ ?" ନାନକ ଟିକିଏ ହସି କହିଥିଲେ—"ଯଦି

ମୋର ଟେକା ପାଣି କିଛି ଦୂରରେ ଥିବା ମୋର କ୍ଷେତରେ ଯାଇ ପହଞ୍ଚି ନପାରିବ, ତେବେ ତୁମେମାନେ ଦେଉଥିବା ପାଣି ପରଲୋକରେ ପହଞ୍ଚିବ କପରି ?" ଗୁରୁନାନକଙ୍କ ଏହି କଥା ଶୁଣି ସମସ୍ତେ ଲାଜରେ ଚୁପ୍ ହୋଇଯାଇଥିଲେ ।

ସେଠାରେ ଗଙ୍ଗା କୂଳରେ ଗୋଟିଏ ଲେଖାଏଁ ଛୋଟ ମଣ୍ଡପ ତିଆରି କରି ବ୍ରାହ୍ମଣମାନେ ବସି ପୂଜାପାଠ କରିଥାନ୍ତି । ନାନକ ଯାଇ ଗୋଟିଏ ଖାଲି ପଡ଼ିଥିବା ମଣ୍ଡପ ଉପରେ ବସିଲେ । ସେହି ମଣ୍ଡପର ଅଧିକାରୀ ବ୍ରାହ୍ମଣ ଆସି ତାହା ଦେଖି କ୍ରୋଧରେ ଅଗ୍ନିଶର୍ମା ହୋଇଉଠିଲେ ଓ କହିଲେ, "ତୁମେ ମୋ ମଣ୍ଡପରେ ବସିବା ଦ୍ୱାରା ତାହା ଅପବିତ୍ର ହେଲା । କାରଣ ବ୍ରାହ୍ମଣ ବ୍ୟତୀତ ଅନ୍ୟ ଜାତିର ଲୋକଙ୍କର ଏହା ଉପରେ ବସିବାର ଅଧିକାର ନାହିଁ ।" ତାହା ଶୁଣି ନାନକ କହିଲେ, "ତୁମର ମଣ୍ଡପ ତ ଆଗରୁ ଅପବିତ୍ର, କାରଣ ତୁମ ଭିତରେ କ୍ରୋଧରୂପକ ଭୂତ ବସିରହି-ଅଛି, ଯିଏ କି ସାଧାରଣ ମଣିଷଙ୍କୁ ଦେଖିଲେ ରାଗରେ ଜଳି-ଉଠୁଛି ।" ତାହା ଶୁଣି ବ୍ରାହ୍ମଣ ଜଣକ ଲାଜରେ ନୀରବ ରହି-ଥିଲେ ।

ହରଦ୍ୱାର ଛାଡ଼ି ନାନକ ତାଙ୍କ ସାଥି ମର୍ଦାନା ସହିତ ପୂର୍ବଦିଗକୁ ଯାତ୍ରାକଲେ । ସେତେବେଳେ ସେ ଏକ ବିଚିତ୍ର ଧରଣର ପୋଷାକ ପିନ୍ଧିଥିଲେ । ତା ହେଉଛି ଗେରୁଆ ରଙ୍ଗର ଲୁଗା ଓ ଦେହରେ ଧଳାରଙ୍ଗର ଚାଦର । ମୁଣ୍ଡରେ ମୁସଲମାନ ଫକୀର ପିନ୍ଧୁଥିବା ଟୋପି ଓ ମଥାରେ ତିଳକର ଟୀକା । ତାଙ୍କ ବେଶଭୂଷା ଉଭୟ ହିନ୍ଦୁ ଓ ମୁସଲମାନଙ୍କ ପରି ଥିଲା । ତେଣୁ

ତାଙ୍କ୍ ଲୋକେ ହିନ୍ଦୁ କି ମୁସଲମାନ ସହଜରେ ଜାଣିପାରୁ ନଥିଲେ ।

ପିଲୀଭୀତ ନାମକ ସ୍ଥାନରେ ପହଞ୍ଚି ସେ ସନ୍ନ୍ୟାସୀ ମାନଙ୍କର ରହଣିସ୍ଥଳ ଗୋରଖମଠାକୁ ଯାଇ ସେମାନଙ୍କ ସହିତ ଆଲୋଚନା କରିଥିଲେ । ଯୋଗୀମାନେ ତାଙ୍କୁ ପଚାରିଥିଲେ, "ବିନା ଯୋଗ ସାଧନାରେ କାହିଁ କି ସିଦ୍ଧି ପ୍ରାପ୍ତହୁଏ ନାହିଁ ?" ତାହା ଶୁଣି ନାନକ କହିଥିଲେ—"ଯୋଗ କି କିନଷ ? ଖାଲି କନ୍ଥା ପିନ୍ଧି ଶରୀରରେ ଭସ୍ମଲଗାଇ ବାଡ଼ି ଧରିଲେ ଯୋଗ ହୋଇନଥାଏ କିମ୍ବା କଣ୍ଠାକୁଣ୍ଠ ରଖିଲେ ମଣିଷ ଯୋଗୀ ହୋଇ-ନଥାଏ । ଯିଏ ମାୟା ମଧ୍ୟରେ ରହି ମାୟା-ରହିତ ଈଶ୍ୱରଙ୍କ ସହିତ ଲୀନ ହୋଇଯାଏ, ବାସ୍ତବିକ୍ ସେ ହେଉଛି ଯୋଗୀ । କେବଳ ଶାସ୍ତ୍ରପୁରାଣ ଗାଇଲେ ଯୋଗୀ ସିଦ୍ଧ ହୋଇନଥାଏ । ତେଣୁ ଯିଏ ସମସ୍ତଙ୍କ ସମାନ ଦୃଷ୍ଟିରେ ଦେଖେ, ସେ ହିଁ ପ୍ରକୃତ ସିଦ୍ଧ ଯୋଗୀ ।" ତାହାଶୁଣି ସନ୍ନ୍ୟାସୀମାନେ ନିରୁତ୍ତର ରହିଥିଲେ ।

ସେଠାରୁ ସେ ବନାରସରେ ଯାଇ ପହଞ୍ଚିଲେ । ସେଠାରେ ଚତୁର ଦାସ ନାମକ ଜଣେ ବ୍ରାହ୍ମଣ ପଣ୍ଡିତଙ୍କ ସହିତ ତାଙ୍କର ସାକ୍ଷାତ ହୋଇଥିଲା । ଚତୁର ଦାସ ପ୍ରାତଃକାଳରେ ଗଙ୍ଗାସ୍ନାନ କରିବାକୁ ଯିବା ସମୟରେ ଏହି ସାକ୍ଷାତ ହୋଇଥିଲା । ନାନକଙ୍କ ବିଚିତ୍ର ବେଶ ଦେଖି ସେ ତାଙ୍କୁ ପଚାରିଥିଲେ, "ଆପଣ କେଉଁ ମାର୍ଗର ଭକ୍ତ । ଆପଣଙ୍କ ହାତରେ ତ ମାଳା ନାହିଁ ଓ ପାଖରେ ଶାଳଗ୍ରାମ ନାହିଁ, ଆପଣଙ୍କ ମୁକ୍ତି ହେବ କିପରି ?" ଗୁରୁନାନକ କହିଥିଲେ, "ହେ ବ୍ରାହ୍ମଣ ! ଈଶ୍ୱରଙ୍କ ପୂଜା ହିଁ ଶାଳଗ୍ରାମ । ସତ୍‌କାର୍ଯ୍ୟ ହିଁ ତୁଳସୀର ମାଳା । ସର୍ବଦା ରାମନାମ ଜପ କଲେ

ପରମେଶ୍ବରଙ୍କ ଦୟାମିଳବ ।" ଚତୁର ଦାସ ପୁଣି ପଚାରିଥିଲେ, "ପରମେଶ୍ବରଙ୍କ ଦୟା ମିଳିବାର ଉପାୟ କ'ଣ ? ନାନକ



[ ଲୋକମାନେ ପିତୃ ପୁରୁଷଙ୍କୁ ଦୀପଦାନ କରୁଛନ୍ତି ]

କହୁଥିଲେ, "ଯିଏ ଜୀବ, ଜନ୍ତୁ, କୀଟପତଙ୍ଗ ସମସ୍ତଙ୍କ ଘଟରେ ଭଗବାନଙ୍କ ସତ୍ତା ସ୍ୱୀକାର କରେ, ତାଙ୍କୁ ପରମେଶ୍ୱରଙ୍କ ଦୟା ଆଗେ ଆଗେ ମିଳିଥାଏ ।"

କିଛିଦିନ ପରେ ବନାରସରେ ରହିଲାପରେ ନାନକ ଗୟାରେ ଯାଇ ପହଞ୍ଚିଲେ । ସେଠି ପଣ୍ଡାମାନେ ତାଙ୍କୁ ପୂର୍ବପୁରୁଷଙ୍କ ଆତ୍ମାର ଶାନ୍ତିଲାଗି ଦୀପଦାନ କରି ଶ୍ରାଦ୍ଧ କରିବାକୁ କହିଲେ । ନାନକ କହିଲେ—"ପରମାତ୍ମାଙ୍କ ନାମ ହିଁ ମୋର ଏକମାତ୍ର ଦୀପ । ଏଥିରେ ମୁଁ ଦୁଃଖ ରୂପକ ତେଲ ଜାଳିଥାଏ । ଏହି ଦୀପ ଯେତିକି ଅଧିକା ଜଳେ ମୃତ୍ୟୁ ମୋଠାରୁ ସେତିକି ଦୂରେଇଯାଏ । ପରମାତ୍ମାଙ୍କ ନାମକୁ ମୁଁ ଶ୍ରାଦ୍ଧରେ ଏକମାତ୍ର ପିଣ୍ଡରୂପେ ବ୍ୟବହାର କରିଥାଏ । ଈଶ୍ୱରଙ୍କ ଭଜନ ହିଁ ମୋ ପକ୍ଷରେ ଗଙ୍ଗା ଓ କାଶୀ ସଦୃଶ୍ୟ । ତାଙ୍କର ନାମରେ ଯେଉଁଠି ଲୋକେ ବୁଡ଼ିରହିଥାନ୍ତି, ସେହି ସ୍ଥାନ ହିଁ ମୋ ପକ୍ଷରେ ସବୁଠାରୁ ବଡ଼ ତୀର୍ଥ ।" ପଣ୍ଡାମାନେ ତାହା ଶୁଣି ଆଶ୍ଚର୍ଯ୍ୟ ହୋଇଥିଲେ ।

ତା'ପରେ ସେ ବୁଲିବୁଲି ଆସାମର କାମରୂପ ପର୍ଯ୍ୟନ୍ତ ଯାଇଥିଲେ । ଯେଉଁଠାରେ ରାତ୍ରିଯାପନ କରୁଥିଲେ, ସେଠାରେ ସେ ସାଧୁ, ସନ୍ଥ, ଧନୀ, ନିର୍ଦ୍ଧନ ସମସ୍ତଙ୍କୁ ଧର୍ମମାର୍ଗ ଅନୁସରଣ କରିବାକୁ କହୁଥିଲେ । ସର୍ବଶେଷରେ ଜଗନ୍ନାଥଙ୍କୁ ଦର୍ଶନ କରିବାଲାଗି ସେ ପୁରୀ ଆସିଥିଲେ । ଜଗନ୍ନାଥଙ୍କ ସନ୍ଧ୍ୟା ଆରତି ଦେଖି ସେ କହିଥିଲେ—"ଯିଏ ଜଗତର ସ୍ୱାମୀ, ଆଳତି ଜାଳି ତାଙ୍କୁ ପୂଜା କରାଯିବା ଉଚିତ ନୁହେଁ । ପ୍ରକୃତି ହିଁ ତାଙ୍କ ଆଳତିର ବନ୍ଦୋବସ୍ତ କରିଅଛି । ଏହା କହି ସେ

ଗାଇଉଠିଥିଲେ ଗୁରୁମୁଖୀ ଭାଷାରେ ଗୋଟିଏ ଭଜନ । ଯାହାର ଅର୍ଥ ହେଉଛି—"ଆକାଶ ରୂପୀ ଥାଳୀ ଉପରେ ସୂର୍ଯ୍ୟ ଓ ଚନ୍ଦ୍ର-



[ ଜଗନ୍ନାଥଙ୍କ ଆରତି ସମୟରେ ପ୍ରାର୍ଥନାରତ ନାନକ ]

ରୂପୀ ଦୀପ ଜଳୁଅଛି । ଆକାଶର ଅସଂଖ୍ୟ ନକ୍ଷତ୍ର ଥାଳୀରେ ମୋତିବନ୍ଦୁପରି ଲାଗିଛନ୍ତି । ମଳୟ ପର୍ବତର ସୁରକ୍ଷିତ ବାୟୁ ଧୂପର କାର୍ଯ୍ୟ କରୁଅଛି । ପବନ ଚାମର ଓ ଅନାହତ ନାଦ ଭେରୀର କାର୍ଯ୍ୟ କରୁଅଛି । ଈଶ୍ୱରଙ୍କର ହଜାର ଆଖି, କିନ୍ତୁ ଆଖି ନାହିଁ । ହଜାର ରୂପ ଥିଲେ ମଧ୍ୟ ସେ ରୂପହୀନ । ତାଙ୍କର ଆଲୋକରେ ସାରା ସଂସାର ଆଲୋକିତ । ତାଙ୍କୁ ସୀମିତ ଆଲୋକରେ ଆଲତି କରାଯିବା ଉଚିତ ନୁହେଁ ।"

ପୁରୀରେ ସେ କିଛିଦିନ ଅବସ୍ଥାନ କଲେ । ବହୁ ସାଧୁ-ସନ୍ନ୍ୟାସୀଙ୍କ ସହିତ ତାଙ୍କର ସାକ୍ଷାତ ହେଲା । ଥରେ ସେ ଜଣେ ସନ୍ନ୍ୟାସୀଙ୍କୁ ଦେଖିଲେ ଯେ କି ଆଖି ବନ୍ଦକରି ବସିଛନ୍ତି । ବହୁଜନ ସମାଗମ ହୋଇଛି । ନାନକ ପଚାରିଲେ—ଏ ସନ୍ନ୍ୟାସୀ ଜଣକ ଏପରି ଆଖିବୁଜି ବସିଛନ୍ତି କାହିଁକି ? ତାଙ୍କ ଶିଷ୍ୟମାନଙ୍କ ମଧ୍ୟରୁ ଜଣେ କହିଲେ—"ବାବା ଆଖି ବୁଜିଥିଲେ ମଧ୍ୟ ସବୁ ଦେଖିପାରନ୍ତି । ତହୁଁ ଗୁରୁନାନକ ବାବାଙ୍କ ଆଗରେ ଥୁଆ ହୋଇଥିବା କମଣ୍ଡଳୁଟି ନେଇ ତାଙ୍କ ପଛରେ ରଖିଦେଲେ ଓ ପଚାରିଲେ--"ମହାରାଜ ! ଆପଣଙ୍କ କମଣ୍ଡଳୁ କାହିଁ ? ସନ୍ନ୍ୟାସୀ ଜଣକ ଠାସୁକମାରି କମଣ୍ଡଳୁ କେଉଁଠି ଅଛି କହିଲେ; କିନ୍ତୁ ତାହା ଭୁଲ୍ ହେଲା । ତାହା ଶୁଣି ନାନକ କହିଲେ—"ଯାହାଙ୍କର ଆଗ-ପଛ ବିଷୟରେ ଧାରଣା ନାହିଁ, ତାଙ୍କର ଆତ୍ମଜ୍ଞାନ ଆସିବ କିପରି ?"

ପୁରୀରେ କିଛିଦିନ କଟାଇ ସେ ମରଦାନାଙ୍କ ସହିତ ପଞ୍ଜାବ ଫେରିଗଲେ । ତତ୍କାଳୀନ ପଞ୍ଜାବର ପାକ୍‌ପତ୍ତନ ନାମକ ସ୍ଥାନରେ ଫରୀଦ୍ ନାମକ ଜଣେ ପ୍ରସିଦ୍ଧ ସୁଫି ସନ୍ଥ ରହୁଥିଲେ । ଇବ୍ରାହିମ୍ ନାମକ ଜଣେ ସୁଫି ସନ୍ଥ ମଧ୍ୟ ତାଙ୍କ

ସହିତ ରହୁଥିଲେ । ନାନକଙ୍କୁ ଗୃହୀ ପୋଷାକରେ ଦେଖି ଶେଖ ଇବ୍ରାହିମ କହିଲେ—"ଆପଣ ସଂସାରୀ କିମ୍ବା ସନ୍ନ୍ୟାସୀ ହେବା ଉଚିତ। ଦୁଇଟି ମାର୍ଗରୁ ଗୋଟିଏ ବାଛିନେବା ଭଲ। ଏପରି ଦୁଇ ନାବରେ ଗୋଡ଼ଦେଲେ ପରିଣତି କ'ଣ ହେବ ?

ତାହା ଶୁଣି ନାନକ କହିଲେ—"ବୁଦ୍ଧିମାନ ବ୍ୟକ୍ତି ଦୁଇନାବରେ ପାଦରଖିବା ଉଚିତ । ସାଂସାରିକତା ରୂପକ ନାବରେ ସାଂସାରିକ କର୍ତ୍ତବ୍ୟ ଓ ଭକ୍ତି ରୂପକ ନାବରେ ଈଶ୍ୱରଙ୍କ ସହିତ ସମ୍ବନ୍ଧ ସ୍ଥାପନ କରାଯାଇଥାଏ। ସେ ଗୋଟିଏ ନାବରେ ରହନ୍ତି ଓ ତାଙ୍କର ଆତ୍ମା ଅନ୍ୟ ନାବ ଉପରେ ଥାଏ । ଏହି ଦୁଇଟିଯାକ ନାହା କେବେ ବୁଡ଼େ ନାହିଁ କି ଭାଙ୍ଗେନାହିଁ ।" ଶେଖ୍ ପୁଣି ପଚାରିଲେ—"ହେ ନାନକ ! ଆତ୍ମାକୁ ଶାନ୍ତି କେଉଁଠି ମିଳେ ?"

ନାନକ କହିଲେ—"ଏହି ଅନ୍ତର ଦୁଃଖ ସୃଷ୍ଟି କରିଥାଏ ଓ ଦୁଃଖକୁ ଦୂର କରିଥାଏ ମଧ୍ୟ । ଯଦି ମନଚକ୍ଷୁରେ ଅନ୍ତରକୁ ଦେଖାଯାଏ ତାହାହେଲେ ଦୁଃଖ ଆପେ ଆପେ ଦୂରୀଭୂତ ହୋଇଥାଏ ।

ଏହିପରି ଶେଖ୍ ଇବ୍ରାହିମ ଓ ଗୁରୁନାନକ ସେଠାରେ କିଛି-ଦିନ ଜ୍ଞାନଚର୍ଚ୍ଚା କରିଥିଲେ ।

ସେଠାରୁ ମର୍ଦ୍ଦାନାଙ୍କ ସହିତ ଗୁରୁନାନକ ଭୀଷଣ ଜଙ୍ଗଲ ପଥଦେଇ ଯାତ୍ରାକଲେ । ବାଟରେ ଘରଦ୍ୱାର କିମ୍ବା ଗାଁଗଣ୍ଡା ନଥାଏ । ଖାଇବେ ବା କ'ଣ ? ମର୍ଦ୍ଦାନାଙ୍କୁ ଅସହ୍ୟ ହୋଇ ହେଲା । ସେ ଆଉ ସମ୍ଭାଳି ନପାରି ଗୁରୁଙ୍କୁ କହିଲେ—"ଗୁରୁଜୀ,

ଭୋକରେ ମୋ କରଡ଼ି ଜଳୁଛି । ଆପଣଙ୍କ ସହିତ ଆସିଥିଲି କ'ଣ ଏ ବଣଜଙ୍ଗଲରେ ଭୋକ ଉପାସରେ ମରିବା ପାଇଁ ?"

ଗୁରୁନାନକ ଟିକିଏ ହସି କିଛି ଦୂରରେ ଥିବା ବରକୋଳି ଗଛକୁ ଦେଖାଇ କହିଲେ, "ଏହି ଗଛରୁ କୋଳି ତୋଳିକରି ଖାଇପାର; କିନ୍ତୁ ଲୋଭକରି ଗାମୁଛାରେ ଯେପରି ନ ବାନ୍ଧ ।" ସେଇ ଗଛରୁ ମର୍ଦ୍ଦାନା କୋଳି ତୋଳିକରି ପେଟେ ଖାଇଲେ । କୋଳି ତାଙ୍କୁ ଭାରି ସୁଆଦ ଲାଗିବାରୁ ସେ ଭାବିଲେ ଯେ ଗୁରୁଜୀଙ୍କ ସାଙ୍ଗରେ ବହୁତଦିନ ବିଭିନ୍ନ ଜାଗା ବୁଲିବାକୁ ପଡ଼ିବ ତେଣୁ ସେ କିଛି କୋଳି ବାନ୍ଧି ସାଙ୍ଗରେ ନେବା ଉଚିତ୍ । ଏହା ଭାବି କୋଳିତକ ବାନ୍ଧିଲେ ଓ ଯେତେବେଳେ ତାଙ୍କୁ ଭୋକ କରେ, ସେ ତାକୁ ଖାଇବା ଆରମ୍ଭ କରିଦିଅନ୍ତି । ହଠାତ୍ ତାଙ୍କ ପେଟରେ ଯନ୍ତ୍ରଣା ଆରମ୍ଭ ହେଲା ଓ ସେ ଛଟପଟ ହୋଇ ତଳେ ପଡ଼ିଗଲେ । ତାଙ୍କୁ ଖୁବ୍ କଷ୍ଟହେଲା । ସେ ଅତି ଲୋଭ-କରି କୋଳି ବେଶୀ ପରିମାଣରେ ଖାଇଥିବାରୁ ଗୁରୁନାନକ ତାଙ୍କୁ ସେଦିନ କହିଥିଲେ ଯେ ଲୋଭ ହେଉଛି ଦୁଃଖର ସବୁଠାରୁ ବଡ଼ କାରଣ ।

ବହୁ ରାଜ୍ୟ ବୁଲିଲାପରେ ମର୍ଦ୍ଦାନା ଘରକୁ ଫେରିବା ପାଇଁ ବହୁତ ବ୍ୟସ୍ତ ହୋଇପଡ଼ିଲେ । ଗୁରୁନାନକ ତାଙ୍କର ବ୍ୟସ୍ତତା ଦେଖି ଶେଷରେ ତଲ୍ୱଣ୍ଡୀ ଫେରିଆସିଲେ । ଗାଁର କିଛି ଦୂରରେ ଥିବା ଏକ ଗଛତଳେ ବସି ନାନକ ମର୍ଦ୍ଦାନାଙ୍କୁ କହିଲେ—"ତୁମେ ଯାଇ ତୁମ ପରିବାରର ଲୋକଙ୍କ ସହିତ ପ୍ରଥମେ ଦେଖା କରିବ । ଆମ ଘରକୁ ମଧ୍ୟ ଯିବ; କିନ୍ତୁ ମୋ ବିଷୟରେ

ସେମାନଙ୍କୁ କିଛିହେଲେ କହିବ ନାହିଁ, ଯେତେ ଶୀଘ୍ର ସମ୍ଭବ ଫେରି ଆସିବାକୁ ଚେଷ୍ଟା କରିବ ।"

ମରଦାନା ତଲ୍‌ବଣ୍ଡୀ ପହଞ୍ଚି ନିଜଘର ଲୋକମାନଙ୍କ ସହିତ ଦେଖାକଲେ । ସମସ୍ତେ ବହୁଦିନପରେ ତାଙ୍କୁ ଦେଖି ଆଦରିକଲେ । ତାପରେ ସେ ଗୁରୁନାନକଙ୍କ ଘରକୁ ଗଲେ । ତାଙ୍କୁ ଦେଖିଲାମାତ୍ରେ ନାନକଙ୍କ ମାଆ ଆନନ୍ଦରେ କୁଣ୍ଢାଇ ପକାଇ କହିଲେ, "ମର୍‌ଦାନେ ! ତୁମେ ତ ଆସିଲ, ମୋ ପୁଅକୁ କେଉଁଠାରେ ଛାଡ଼ି ଆସିଲ ?" ଏଥିମଧ୍ୟରେ ବହୁଲୋକ ସେଠାରେ ରୁଣ୍ଡହୋଇ ନାନକଙ୍କ ବିଷୟରେ ପଚରାଉଚରା କଲେ । ମରଦାନା କିନ୍ତୁ ତାଙ୍କ ବିଷୟରେ ପଦେ ଦି'ପଦ କହି ହଠାତ୍ ଉଠିଯିବାକୁ ବାହାରିପଡ଼ିଲେ । ନାନକଙ୍କ ମାଆ ଜାଣିପାରିଲେ ଯେ ମର୍‌ଦାନା ନାନକଙ୍କ ପାଖକୁ ବାହାରିଛନ୍ତି । ତେଣୁ ସେ କିଛି ଲୁଗାପଟା ଓ ମିଠାଇ ଧରି ତାଙ୍କ ପଛେ ପଛେ ଚାଲିଲେ ।

ନାନକ ମାଆଙ୍କୁ ଦେଖି ତାଙ୍କ ପାଦ ଛୁଇଁ ପ୍ରଣାମ କଲେ । ମାଆ ତାଙ୍କୁ କୁଣ୍ଢାଇ ପକାଇ କହିଲେ, "ବାପା ! ତୁ ଆଉ କୁଆଡ଼େ ଯାଆନା । ନେ, ମୁଁ ତୋ ପାଇଁ କିଛି ମିଠାଇ ଆଣିଛି । ଏତକ ଖାଇ କିଛି ସମୟ ବିଶ୍ରାମ କର ।" ତାହା ଶୁଣି ନାନକ କହିଲେ—ମାଆ । ମୋତେ ଏ ମିଠାଇ ଖାଇବାକୁ ଆଉ ଭଲ ଲାଗୁନାହିଁ । ମାଆ ପଚାରିଲେ—ପୁଅ ! ତୋର କ'ଣ ହୋଇଛି ? ମିଠାଇ ଖାଇବାକୁ ଭଲଲାଗୁନାହିଁ କାହିଁକି ? ନାନକ କହିଲେ—"ଯିଏ ଈଶ୍ୱରଙ୍କ ନାମରୂପକ ମଧୁର ପଦାର୍ଥ

ଗ୍ରହିଣି ସାରିଛି, ତାକୁ ଏ ମିଠାଇ ବା ଭଲ ଲାଗିବ କିପରି ? ଭଗବାନଙ୍କ ବିଷୟ୍ଯ ଆଲୋଚନା କରିବାଠାରୁ ତାଙ୍କ ଗୁଣଗାନ କରିବା ଅଧିକ ମଧୁର । ଯାହାପ୍ରତି ତାଙ୍କର କୃପାଦୃଷ୍ଟି ପଡ଼େ, ସେ ଅସଂଖ୍ୟ ପ୍ରକାର ମିଷ୍ଟାନ୍ନର ସ୍ୱାଦୁ ପାଇଥାଏ । ତୁମେ ଆଣିଥିବା ମିଠା ଖାଇଲେ ଶରୀର ରୋଗାକ୍ରାନ୍ତ ହେବ; କିନ୍ତୁ ତାଙ୍କର ନାମରସ ଯେତେ ପାନ କଲେ ମଧ୍ୟ ଶରୀରର କିଛି କ୍ଷତ ହେବନାହିଁ; ବରଂ ମନ ସର୍ବଦା ନିର୍ମଳ ଓ ପ୍ରଫୁଲ୍ଲ ରହିବ ।”

କଥାରେ କହନ୍ତି, ତୁଣ୍ଡ ବାଇଦ ସହସ୍ର କୋଶ । ଗାଁରେ ସମସ୍ତେ ଜାଣିଲେ ନାନକ ଆସିଛନ୍ତି । ତେଣୁ ସମସ୍ତେ ତାଙ୍କୁ ଦେଖିବାକୁ ଆସିଲେ । କାଲୁ ମେହେତା ତାହା ଜାଣି ଘୋଡ଼ା ଉପରେ ଚଢ଼ି ତରବର ହୋଇ ତାଙ୍କୁ ଦେଖିବାକୁ ଗଲେ । ପୁଅକୁ ସନ୍ନ୍ୟାସୀ ବେଶରେ ଦେଖି ତାଙ୍କ ମନ ବହୁତ କଷ୍ଟ ହେଲା । କାନ୍ଦିପକାଇ ସେ କହିଲେ—“ନାନକ ! ମୋ ଘୋଡ଼ା ଉପରେ ବସି ଗାଁକୁ ଚାଲ । ତୋର ଏପରି ପୋଷାକ ଦେଖି ମୁଁ ଆଉ ଧୈର୍ଯ୍ୟ ଧରି ରହିପାରୁନାହିଁ ।”

ତାହା ଶୁଣି ନାନକ କହିଲେ—“ବାପା ! ଯେ ଈଶ୍ୱରଙ୍କ ମାର୍ଗରେ ଚାଲିଲାଣି, ତା ପାଇଁ ହାତୀ, ଘୋଡ଼ା ଇତ୍ୟାଦି ଯାନବାହାନର ପ୍ରୟୋଜନ ନାହିଁ ।” ବାପା କହିଲେ—“ପୁଅରେ ! ଥରେ ଘରକୁ ଚାଲ, ତୋ ପାଇଁ ନୂଆ ଘର ତିଆରି କରିଛି । ପିଲାପିଲିଙ୍କୁ ଦେଖିବୁ, ମନ ଭାରି ଖୁସିହେବ । ନାନକ କହିଲେ—“ଈଶ୍ୱରଙ୍କ ନାମ ହିଁ ମୋର ଏକମାତ୍ର ଘର । ତାଙ୍କର କୃପାଦୃଷ୍ଟି ହିଁ ମୋର ପରିବାର । ପ୍ରଭୁ ଯାହା କରୁଛନ୍ତି, ତାହା ହିଁ

ମୁଁ କହୁଛି । ଯେତେ ଅନୁନୟ ବିନୟ କଲେ ମଧ୍ୟ ସେ ଘରକୁ ଫେରିବାକୁ ରାଜିହେଲେ ନାହିଁ ।

ଶେଷରେ ସେ ପିତାମାତାଙ୍କ ଆଶୀର୍ବାଦ ଭିକ୍ଷାକରି ଦକ୍ଷିଣ ଭାରତ ଯାତ୍ରା ଆରମ୍ଭ କଲେ ଓ ଗୋଇନ୍ଦବାଲ୍‌ଠାରେ ଯାଇ ପହଞ୍ଚିଲେ । ସେଠାରେ ଗୋଟିଏ କୁଡ଼ିଆ ଘର କରି ଜଣେ କୁଷ୍ଠରୋଗୀ ରହୁଥିଲା । ସେ ନାନକ ଓ ମର୍‌ଦାନଙ୍କୁ ଖୁବ୍ ଆଦରରେ ପାଛୋଟି ନେଇ ଭାରୀ ଖୁସିହେଲା । ଆଗରୁ ଲୋକେ ଘୃଣାକରି ତା ପାଖକୁ ଯାଉନଥିଲେ । ଯେ ହେତୁ ନାନକଙ୍କ ମନରେ ବିକାର ନଥିଲା, ତେଣୁ ମର୍‌ଦାନାଙ୍କ ସହିତ ସେ ରୋଗୀର କୁଡ଼ିଆଘରେ ରାତ୍ରୀଯାପନ କଲେ । କୁଷ୍ଠରୋଗୀ ତାଙ୍କୁ ପଚାରିଲା—"ଗୁରୁଦେବ ! ମୁଁ ଏହି ଭୟାନକ ରୋଗରେ ପଡ଼ିବା ଦ୍ୱାରା ଲୋକେ ମୋତେ ଘୃଣା କରୁଅଛନ୍ତି । ଏହି ବ୍ୟାଧିରୁ କ'ଣ ମୁଁ ଆରୋଗ୍ୟଲାଭ କରିପାରିବି ନାହିଁ ?"

ଗୁରୁ କହିଲେ—"ଈଶ୍ୱରଙ୍କୁ ଭୁଲିଯିବା ଓ ତାଙ୍କ ନିୟମକୁ ଅବହେଳା କରିବା ଫଳରେ ମଣିଷ ରୋଗାକ୍ରାନ୍ତ ହୋଇଥାଏ । ଶରୀରର ରୋଗ ଔଷଧ ଖାଇଲେ ଭଲ ହୋଇଥାଏ; କିନ୍ତୁ ଆତ୍ମାର ରୋଗ ସହଜେ ଭଲ ହୁଏ ନାହିଁ । ଯଦି ମନକୁ ଈଶ୍ୱର ରୂପୀ ଅଗ୍ନିରେ ଦାହ କରାନଯାଏ, ତାହାହେଲେ ଏ ରୋଗରୁ ଆରୋଗ୍ୟ ମିଳି ନଥାଏ । ଯାହାର ଆତ୍ମା ନିରୋଗ, ସେ ହସି ହସି ଶରୀରର ଦୁଃଖ ସହିନିଏ; କିନ୍ତୁ ଆତ୍ମାରୋଗ ପାଇଁ ପରମାତ୍ମା ହିଁ ଏକମାତ୍ର ଔଷଧ ।"

ଗୁରୁ ନାନକ ନିଜ ହାତରେ ସେହି କୁଷ୍ଠରୋଗୀର ସେବା

କରୁଥିଲେ ଓ କିଛୁଦିନ ପରେ ସେ ରୋଗମୁକ୍ତ ହୋଇଥିଲା ।



( କୁଷ୍ଠରୋଗୀ ସେବାରେ ଗୁରୁ ନାନକ )

ତା'ପରେ ଗୁରୁ ନାନକ ଯାଇ ପହଞ୍ଚିଥିଲେ ସିଆଲ୍‌-କୋଟ୍‌ଠାରେ । ସେଠାରେ ସେ ଗୋଟିଏ ବଡ଼ ବରଗଛ ମୂଳେ

ବିଶ୍ରାମ ନେଇଥିଲେ । ଯେଉଁ ଗଛ ଏପର୍ଯ୍ୟନ୍ତ 'ବାବେ ଦ ବେର' ନାମରେ ପ୍ରସିଦ୍ଧ । ନାନକଙ୍କ ସ୍ମୃତି ରକ୍ଷାଲାଗି ମଧ୍ୟ ସେଠି ଏକ ଗୁରୁଦ୍ୱାର ତିଆରି କରାଯାଇଛି । ସେହି ସ୍ଥାନରେ ରହି ସେ ମରଦାନାଙ୍କୁ ଡାକି କହିଥିଲେ—"ବନ୍ଧୁ ! ବଜାର ଯାଇ ମୋ ପାଇଁ ଗୋଟିଏ ସଉଦା ଆଣିବ । ସବୁ ଦୋକାନକୁ ଯାଇ ଟୋକେଇଏ ସତ୍ୟ ଓ ଟୋକେଇଏ ମିଥ୍ୟା ମାଗିବ । ଯେଉଁଠାରୁ ଯେପରି ଉତ୍ତର ମିଳିବ, ମୋତେ ଠିକ୍ ସେଇଆ ଆସି କହିବ ।" ମର୍‌ଦାନା ହଁ କହି ବଜାରକୁ ଗଲେ । ସେ ଜାଣିପାରିଲେ ଯେ ଆଜି ଗୁରୁ କିଛି ନୂତନ ଶିକ୍ଷା ଦେବାକୁ ଚାହୁଁଛନ୍ତି । ସବୁ ଦୋକାନୀଙ୍କୁ ଯାଇ ସେ ଗୁରୁ ବରାଦ କରିଥିବା ସଉଦା ମାଗିଲେ । ବହୁ ଦୋକାନୀ ତାହା ଶୁଣି ହସି ଉଡ଼ାଇଦେଲେ ।

ସବାଶେଷରେ ସେ ଯାଇପହଞ୍ଚିଲେ "ମୂଲେ" ନାମକ ଜଣେ ଦୋକାନୀଙ୍କ ପାଖରେ ଓ ତାଙ୍କୁ 'ସତ' ଆଉ 'ମିଛ'ରୁ ଟୋକେଇଏ ଲେଖାଏଁ ସଉଦା ମାଗିଲେ । ମୂଲେ କହିଲେ—"ଭାଇ ! ଗୁରୁଙ୍କୁ ଯାଇ କହ ଯେ ବଞ୍ଚିବା ମିଛ ଓ ମରିବା ହିଁ ସତ ।" ମର୍‌ଦାନା ସେଇଆ ଯାଇ ଗୁରୁଙ୍କୁ କହିଲେ ।

ତାହା ଶୁଣି ଗୁରୁ କହିଲେ—"ଯିଏ ଏପରି ଉତ୍ତର ଦେଲେ, ସେ ନିଶ୍ଚିତଭାବେ ଜଣେ ଜ୍ଞାନୀଲୋକ । ମୁଁ ତାଙ୍କ ସହିତ ସାକ୍ଷାତ କରିବାକୁ ଚାହେଁ ।" ମର୍‌ଦାନା ଯାଇ ସେହି ଦୋକାନୀଙ୍କୁ ଖବର ଦେଲେ ଓ ଦୋକାନୀ ଜଣକ ଗୁରୁଙ୍କୁ ଆସି ସାକ୍ଷାତ କଲେ । ସେ ତାଙ୍କ ପାଖରେ କିଛିଦିନ କଟାଇଲା ପରେ ଗୁରୁଙ୍କ କଠୋର ନୀତି ନିୟମ ମାନି ଆଉ ବେଶୀଦିନ ଚଳିପାରିଲେ

ନାହିଁ । ବାହାନା କରି ମୂଲେ ନିଜ ଘରକୁ ଗଲେ ଯେ ଆଉ ଲେଉଟିଲେ ନାହିଁ ।

ଆଉ ଥରେ ଗୁରୁ ସିଆଲ୍‌କୋଟ୍ ଯାଇ 'ମୂଲେ'ଙ୍କ ଘରେ ପହଞ୍ଚିଲେ । ତାଙ୍କ ସ୍ତ୍ରୀ କହିଲେ ଯେ, ସେ ବହୁତ ଦିନ ହେଲା ବିଦେଶ ଯାଇ ଛନ୍ତି, ଘରକୁ ଫେରି ନାହାନ୍ତି । ତାହା ଶୁଣି ଗୁରୁ ମର୍‌ଦାନାଙ୍କୁ କହିଲେ—"ଦେଖିଲ, ଏଇ ମୂଲେ ଆମକୁ କହୁ-ଥିଲେ ମରିବା ହିଁ ସତ, କିନ୍ତୁ ବଞ୍ଚିବାପାଇଁ ସେ ଘରେ ଲୁଚି ରହି ଆମକୁ ସାକ୍ଷାତ୍ କରୁ ନାହିଁ ।" କିଛିଦିନ ପରେ ସାପ-କାମୁଡ଼ାରେ ମୂଲେଙ୍କର ମୃତ୍ୟୁ ହୋଇଥିଲା ।

ସିଆଲ୍‌କୋଟ୍‌ରୁ ଯାଇ ଗୁରୁ ନାନକ ମିଠନ୍‌କୋଟ୍‌ରେ ପହଞ୍ଚିଲେ । ସେଠାରେ ମଧ୍ୟ ସେ ମୁସଲମାନ୍ ସନ୍ନ୍ୟାସୀ ଫକୀରମିଆଁଙ୍କ ସହିତ ଧର୍ମ ବିଷୟରେ ବହୁ ଆଲୋଚନା କରିଥିଲେ । ପ୍ରଶ୍ନ ଛଳରେ ଫକୀର ମିଆଁ ଗୁରୁଙ୍କୁ ପଚାରି-ଥିଲେ—"ଜ୍ଞାନ କଣ ? ଈଶ୍ୱରଙ୍କୁ ଡରିବ କିପରି ? ସତ୍ୟର ଅଗ୍ନି କିପରି ଜଳିଥାଏ ।"

ଗୁରୁ ଉତ୍ତର ଦେଇଥିଲେ—"ଈଶ୍ୱରଙ୍କୁ ପ୍ରେମ କଲେ ଯେଉଁ ଅନୁଭୂତି ମିଳିଥାଏ, ତାହା ହିଁ ପ୍ରକୃତ ଜ୍ଞାନ । ଈଶ୍ୱରଙ୍କୁ ଆତ୍ମ ସମର୍ପଣ କରିବା ହିଁ ତାଙ୍କୁ ଭୟ କରିବା । ଈଶ୍ୱରଙ୍କ ପ୍ରତି ବିଶ୍ୱାସ ରଖିବାଦ୍ୱାରା ସତ୍ୟର ଅଗ୍ନି ଜଳିଉଠିଥାଏ ।"

ସେଠାରୁ ଯାଇ ନାନକ ଲାହୋରରେ ପହଞ୍ଚିଲେ । ବର୍ତ୍ତ-ମାନ ଲାହୋର ପାକିସ୍ଥାନରେ ଅବସ୍ଥିତ । ସେଠାରେ ସେତେ-ବେଳେ 'ଦୁନୀଚାନ୍ଦ' ନାମକ ଜଣେ କୋଟିପତି ରହୁଥିଲେ ।

ନାହିଁ । ବାହାନା କରି ମୂଲେ ନିଜ ଘରକୁ ଗଲେ ଯେ ଆଉ ଲେଉଟିଲେ ନାହିଁ ।

ଆଉ ଥରେ ଗୁରୁ ସିଆଲ୍‌କୋଟ୍ ଯାଇ 'ମୂଲେ'ଙ୍କ ଘରେ ପହଞ୍ଚିଲେ । ତାଙ୍କ ସ୍ତ୍ରୀ କହିଲେ ଯେ, ସେ ବହୁତ ଦିନ ହେଲା ବିଦେଶ ଯାଇଛନ୍ତି, ଘରକୁ ଫେରି ନାହାନ୍ତି । ତାହା ଶୁଣି ଗୁରୁ ମର୍‌ଦାନାଙ୍କୁ କହିଲେ—"ଦେଖିଲ, ଏଇ ମୂଲେ ଆମକୁ କହୁ-ଥିଲେ ମରିବା ହିଁ ସତ, କିନ୍ତୁ ବଞ୍ଚିବାପାଇଁ ସେ ଘରେ ଲୁଚି ରହି ଆମକୁ ସାକ୍ଷାତ୍ କରୁ ନାହିଁ ।" କିଛିଦିନ ପରେ ସାପ-କାମୁଡ଼ାରେ ମୂଲେଙ୍କର ମୃତ୍ୟୁ ହୋଇଥିଲା ।

ସିଆଲ୍‌କୋଟ୍‌ରୁ ଯାଇ ଗୁରୁ ନାନକ ମିଠନ୍‌କୋଟ୍‌ରେ ପହଞ୍ଚିଲେ । ସେଠାରେ ମଧ୍ୟ ସେ ମୁସଲମାନ୍ ସନ୍ନ୍ୟାସୀ ଫକୀରମିଆଁଙ୍କ ସହିତ ଧର୍ମ ବିଷୟରେ ବହୁ ଆଲୋଚନା କରିଥିଲେ । ପ୍ରଶ୍ନ ଛଳରେ ଫକୀର ମିଆଁ ଗୁରୁଙ୍କୁ ପଚାରି-ଥିଲେ—"ଜ୍ଞାନ କଣ ? ଈଶ୍ୱରଙ୍କୁ ଡରିବ କିପରି ? ସତ୍ୟର ଅଗ୍ନି କିପରି ଜଳିଥାଏ ।"

ଗୁରୁ ଉତ୍ତର ଦେଇଥିଲେ—"ଈଶ୍ୱରଙ୍କୁ ପ୍ରେମ କଲେ ଯେଉଁ ଅନୁଭୂତି ମିଳିଥାଏ, ତାହା ହିଁ ପ୍ରକୃତ ଜ୍ଞାନ । ଈଶ୍ୱରଙ୍କୁ ଆତ୍ମ ସମର୍ପଣ କରିବା ହିଁ ତାଙ୍କୁ ଭୟ କରିବା । ଈଶ୍ୱରଙ୍କ ପ୍ରତି ବିଶ୍ୱାସ ରଖିବାଦ୍ୱାରା ସତ୍ୟର ଅଗ୍ନି ଜଳିଉଠିଥାଏ ।"

ସେଠାରୁ ଯାଇ ନାନକ ଲାହୋରରେ ପହଞ୍ଚିଲେ । ବର୍ତ୍ତ-ମାନ ଲାହୋର ପାକିସ୍ଥାନରେ ଅବସ୍ଥିତ । ସେଠାରେ ସେତେ-ବେଳେ 'ଦୁନୀଚାନ୍ଦ' ନାମକ ଜଣେ କୋଟିପତି ରହୁଥିଲେ ।

'ଦୁନୀଚାନ୍ଦ' ଗୁରୁଙ୍କ ଆସିବା ଖବର ଜାଣି ତାଙ୍କୁ ନିଜ ଘରକୁ ପାଛୋଟି ନେଲେ । ସେଦିନ ତାଙ୍କ ବାପାଙ୍କ ଶ୍ରାଦ୍ଧ । ବଡ଼ ଧରଣର ବ୍ରାହ୍ମଣ ଭୋଜନର ବ୍ୟବସ୍ଥା ହୋଇଥାଏ । ଗୁରୁ ଦେଖିଲେ ଯେ ଦୁନୀଚାନ୍ଦଙ୍କ ଘରେ କ'ଣ ସବୁ ପୁଡ଼ା ବନ୍ଧାହୋଇ ଥିଆହୋଇଛି । ଗୁରୁ ପଚାରିଲେ—"ଏସବୁ କ'ଣ ?" ଦୁନୀଚାନ୍ଦ କହିଲେ—"ଏସବୁ ଗୋଟିଏ ଗୋଟିଏ ଲକ୍ଷେ ଟଙ୍କିଆ ଥଳି ।" ଗୁରୁ ସଙ୍ଗେ ସଙ୍ଗେ ଗୋଟିଏ ଛୁଞ୍ଚି କାଢ଼ି ତାଙ୍କୁ ଦେଇ କହିଲେ— "ଏଇ ଛୁଞ୍ଚିଟି ତୁମ ପାଖରେ ମୋର ଅମାନତ ରହିଲା । ଏହାକୁ ସାବଧାନରେ ରଖ । ପରଲୋକରେ ଏହି ଛୁଞ୍ଚିଟି ମୁଁ ତୁମଠାରୁ ବୁଝି ନେବି ।"

ତାହା ଶୁଣି ଦୁନୀଚାନ୍ଦ ଆଶ୍ଚର୍ଯ୍ୟ ହୋଇ କହିଲେ— "ମହାରାଜ । ଏହା ସମ୍ଭବ ହେବ କିପରି ? ମର୍ତ୍ତ୍ୟର ଜିନିଷ ସ୍ୱର୍ଗକୁ କ'ଣ ଯାଇପାରିବ ?" ଗୁରୁ କହିଲେ—"ଯଦି ଗୋଟିଏ ଛୋଟିଆ ଛୁଞ୍ଚି ସ୍ୱର୍ଗଲୋକ ପର୍ଯ୍ୟନ୍ତ ଯାଇପାରିବ ନାହିଁ, ତାହା ହେଲେ ତୁମର ଏହି ସମ୍ପତ୍ତି ଲାଗି ଏତେ ଅଭିମାନ କାହିଁକି ? ତୁମ ସଞ୍ଚିତ ଧନ କ'ଣ ପରଲୋକକୁ ବୋହିନେଇ ପାରିବ ।" ଗୁରୁଙ୍କଠାରୁ ତାହା ଶୁଣି ଦୁନୀଚାନ୍ଦ ବହୁତ ଲଜ୍ଜିତ ହେଲେ ଓ ନିଜର ସାରା ସମ୍ପତ୍ତି ଗରିବଲୋକଙ୍କୁ ଦାନ କରି ଦେଇଥିଲେ ।

ତାପରେ ଗୁରୁ ଯାଇ ପହଞ୍ଚିଲେ ରାବୀ ନଦୀ କୂଳରେ ଅବସ୍ଥିତ କରତାରପୁର ସହରରେ । ସେଠାରେ ସେ କିଛିଦିନ ଅବସ୍ଥାନ କଲେ । ସେଠାରେ ଜଣେ ବାଳକ ସବୁଦିନେ ତାଙ୍କ ପାଖକୁ ଆସେ ଓ ମନଧ୍ୟାନ ଦେଇ ତାଙ୍କର ଉପଦେଶ ଶୁଣେ । ଦିନେ ଗୁରୁ ତାକୁ ପଚାରିଲେ—"ଏତେ ଅଳ୍ପ ବୟସରୁ ତୁମ

ମନକୁ ଭଗବତ୍ ଚିନ୍ତା ଆସିଲା କିପରି ?" ବାଳକ ତାହା ଶୁଣି ଉତ୍ତର ଦେଲା —"ଗୁରୁଜୀ, ମୋ ମାଆ ଥରେ ଚୁଲୀ ଜାଳୁଥିଲା । ମୁଁ ଦେଖିଲି ବଡ଼ କାଠମାନ ନିଆଁ ନ ଧରି ସାନ କାଠ-ଗୁଡ଼ିକ ଆଗ ନିଆଁ ଧରୁଥିଲା । ତହୁଁ ମୁଁ ଭାବିଲି, ମୁଁ ଖଣ୍ଡିଏ ଛୋଟ କାଠପରି । ଏ ସଂସାରର ପାପନିଆଁ ମୋତେ ଆଗ ଧରିବ । ତେଣୁ ମୁଁ ଏ ବୟସରୁ ଆପଣଙ୍କ ଶରଣ ନେବାପାଇଁ ଆସିଛି ।"

ଗୁରୁଜୀ ସେହି ବାଳକର ଉତ୍ତର ଶୁଣି ଭାରି ଖୁସି ହେଲେ; ଆଉ କହିଲେ—"ତୁମେ ତ ଜଣେ ବୟସ୍କ ଲୋକପରି ଜ୍ଞାନ-ତତ୍ତ୍ୱ କହୁଛ ।"

ସେହି ବାଳକର ନାମ ହେଉଛି 'ବୁଢ଼ା' । ସେ ବହୁବର୍ଷ ବଞ୍ଚି-ଥିଲା । ସେଠାରେ ଗୁରୁଜୀ ଯେତେଦିନ ରହିଲେ ସବୁଦିନେ ସକାଳ ସନ୍ଧ୍ୟାରେ ଗୁରୁବାଣୀ ପାଠ ହେଉଥାଏ । ଭକ୍ତମାନେ ଏକାଠି ବସି ଖିଆପିଆ କରୁଥାନ୍ତି, ଯାହାକୁ କି ଗୁରୁମୁଖୀ ଭାଷାରେ 'ଲଙ୍ଗର୍' କହନ୍ତି । ଏହି ଲଙ୍ଗର୍‌ରେ ସାନବଡ଼ ଅମୀର ଫକୀର ସମସ୍ତେ ସମାନ । ସମସ୍ତେ ଗୁରୁଙ୍କର 'ଶିଖ' ଅର୍ଥାତ୍ ଶିଷ୍ୟ ।

କର୍ତାରପୁରରୁ ଗୁରୁ ନାନକ ଦକ୍ଷିଣ ଭାରତ ଯାତ୍ରା କରି-ଥିଲେ । ବାଟରେ ଯେଉଁଠି ସେ ରହୁଥାନ୍ତି, ଉପଦେଶ ଦେଇ ଲୋକଙ୍କ ମନରୁ ଅନ୍ଧବିଶ୍ୱାସ ଦୂର କରୁଥାନ୍ତି । ଏହିପରି ସେ କନ୍ୟାକୁମାରୀ ପର୍ଯ୍ୟନ୍ତ ଯାତ୍ରା କରିଥିଲେ । ତାପରେ ସେ ସମୁଦ୍ର ପାର ହୋଇ ଶ୍ରୀଲଙ୍କାରେ ଯାଇ ପହଞ୍ଚିଲେ । ସେଠାରେ ସେ ରାଜଉଦ୍ୟାନରେ ରହିଥିଲେ । ଗୁରୁଜୀଙ୍କୁ ପରୀକ୍ଷା କରିବା

ଲାଗି ଲଙ୍କାର ରାଜା ତାଙ୍କ ପାଖକୁ ଦଳେ ସୁନ୍ଦରୀ ନର୍ତ୍ତକୀ ପଠାଇଥିଲେ । ନର୍ତ୍ତକୀମାନେ ଯେତେ ପ୍ରଲୋଭନ ଦେଖାଇଲେ ମଧ୍ୟ ନାନକ ଅଟଳ ରହିଥିଲେ । ତାପରେ ରାଜା ନିଜେ ଯାଇ ଗୁରୁଜୀଙ୍କ ପାଖରେ ପହଞ୍ଚିଲେ । ପ୍ରଥମେ ସେ ପଚାରିଥିଲେ— "ଆପଣ କଣ ଜଣେ ଯୋଗୀ ?" ନାନକ ଉତ୍ତର ଦେଇଥିଲେ— "ଯୋଗୀ ହେଉଛି ସେହି ବ୍ୟକ୍ତି ଯାହାଙ୍କ ମନ ସର୍ବଦା ନିର୍ମଳ ଓ ଈଶ୍ବରଙ୍କ ପ୍ରେମରେ ସର୍ବଦା ବୁଡ଼ିରହିଥାଏ । ତା ମନକୁ ଟିକିଏ ହେଲେ ଚଞ୍ଚଳତା ଛୁଇଁ ନଥାଏ ।" ରାଜା ପଚାରିଥିଲେ— "ତାହାହେଲେ ଆପଣ କଣ ଜଣେ ବ୍ରାହ୍ମଣ ?" ଗୁରୁଜୀ ଉତ୍ତର ଦେଇଥିଲେ— "ବ୍ରହ୍ମ ଜଳରେ ଯେ ସ୍ନାନ କରେ, ସେ ହେଉଛି ବ୍ରାହ୍ମଣ" । ରାଜା ପୁଣି ପଚାରିଥିଲେ— 'ଆପଣ ତ ବ୍ରାହ୍ମଣ ନୁହଁନ୍ତି, ତାହାହେଲେ କ'ଣ ଆପଣ ଏଠାକୁ ବ୍ୟବସାୟ କରିବାକୁ ଆସିଛନ୍ତି ?"

ନାନକ କହିଲେ— "ହଁ, ମୁଁ ଜଣେ ବ୍ୟବସାୟୀ । ମୋର ଜିହ୍ବା ହେଉଛି ଦଣ୍ଡୀ ଓ ହୃଦୟ ହେଉଛି ତରାଜୁ । ଯାହାଦ୍ୱାରା କି ମୁଁ ସର୍ବଦା ଈଶ୍ବରଙ୍କୁ ଓଜନ କରିଥାଏ ।" ତାହା ଶୁଣି ନାନକଙ୍କ ନିକଟରେ ରାଜାଙ୍କ ମୁଣ୍ଡ ନଇଁ ପଡ଼ିଥିଲା ।

ଲଙ୍କାରେ କିଛିଦିନ ରହି ନାନକ ପଞ୍ଜାବ ଫେରି ଆସିଥିଲେ । ତାପରେ ବାଟାଲାଠାରେ ହେଉଥିବା ମେଳା ଦେଖିବାକୁ ସେ ଗଲେ । ସେଠାରେ ବହୁ ସାଧୁସନ୍ଥଙ୍କ ସହିତ ତାଙ୍କର ସାକ୍ଷାତ୍ ହେଲା । ସେଠାରେ କିଛିଦିନ ରହି ସେ ଜ୍ଞାନଚର୍ଚ୍ଚା କଲାପରେ କାଶ୍ମୀର ଯାତ୍ରା କରିଥିଲେ । ଏହିପରି ସେ ଭାରତର ସମସ୍ତ ତୀର୍ଥ

ଦର୍ଶନ କରିଥିଲେ ଓ ନିଜ ଉପଦେଶ ବଳରେ ଲୋକଙ୍କ ମନରୁ କୁସଂସ୍କାର ଦୂର କରିଥିଲେ ।

ପରେ ସେ ମୁସଲମାନଙ୍କ ପବିତ୍ର ତୀର୍ଥ ମକ୍କା, ମଦିନା ଓ ବାଗଦାଦ ମଧ୍ୟ ଯାତ୍ରା କରିଥିଲେ । ମକ୍କାରେ କିଛିଦିନ ରହି ସେ ହାଜି ଓ ମୁଲ୍ଲାମାନଙ୍କ ସହିତ ଧର୍ମ ଚର୍ଚ୍ଚା କରିଥିଲେ । ବାଗ୍‌ଦାଦ୍‌ରେ ମଧ୍ୟ ସେ ପ୍ରସିଦ୍ଧ ପୀର୍‌ ଶେଖ୍‌ଙ୍କ ଦର୍ଶନକରି ସେଠି ଧର୍ମଚର୍ଚ୍ଚା କରିଥିଲେ । ସେଠାରେ ନାନକଙ୍କ ସ୍ମୃତି ରକ୍ଷାଲାଗି ଏକ ସ୍ମୃତି-ସ୍ତମ୍ଭ ତିଆରି କରାଯାଇଥିଲା, ଯାହାକି ଏପର୍ଯ୍ୟନ୍ତ ରହିଅଛି । ବାଗ୍‌ଦାଦ୍‌ରୁ ସେ ଆଫ୍‌ଗାନିସ୍ଥାନ ଯାଇଥିଲେ । ସେଠାରେ କିଛିଦିନ ରହି ସେ ନିଜ ଦେଶକୁ ଫେରିଆସିଥିଲେ । ଠିକ୍ ସେତିକିବେଳେ ବାବର ଭାରତ ଆକ୍ରମଣ କରିଥିଲେ । ମୋଗଲ ସୈନ୍ୟଙ୍କ ଅତ୍ୟାଚାରରେ ସମଗ୍ର ଦେଶବାସୀ ଅସ୍ତ-ବ୍ୟସ୍ତ ହୋଇପଡ଼ିଥିଲେ । ବାବରଙ୍କ ସୈନ୍ୟମାନଙ୍କ ଅତ୍ୟାଚାର ନାନକ ନିଜ ଆଖିରେ ଦେଖି ନିଜ ଭକ୍ତ ଲୋକଙ୍କୁ କହିଥିଲେ —"ଲୋକେ ! ବାବର୍ ପାପର ବରକାତି ନେଇ କାବୁଲ୍‌ରୁ ଭାରତ ଆସିଛି । ସମସ୍ତଙ୍କ ଧନଦୌଲତ୍ ଜବରଦସ୍ତ ଲୁଣ୍ଠନ କରୁଅଛି । ତା' ପାଖରେ ଲଜ୍ଜା ଓ ଧର୍ମ ନାହିଁ ।"

ଶେଷରେ ବାବରଙ୍କ ସୈନ୍ୟମାନେ ସୈଦପୁର ଆକ୍ରମଣ କରି ସେହି ସହର ଅଧିକାର କରିଥିଲେ । ସେଠାରେ ବହୁ ଲୋକଙ୍କୁ ମାରିପକାଇଥିଲେ ଓ କେତେକଙ୍କୁ ବନ୍ଦୀ କରିଥିଲେ । ଗୁରୁ-ନାନକ ଓ ମର୍ଦ୍ଦାନା ମଧ୍ୟ ଜେଲ୍‌ରେ ରହି ସାଧାରଣ କଏଦୀଙ୍କ ପରି କଷ୍ଟ ସହିଥିଲେ । ନାନକଙ୍କୁ ବୋଝ ବୋହିବା ଓ ଅଟା ପେଷିବା ଭଳି କଷ୍ଟକର କାମ କରିବାକୁ ପଡ଼ିଥିଲା । ମର୍ଦ୍ଦାନାଙ୍କୁ



( ବାବରଙ୍କ ସମ୍ମୁଖରେ ବନ୍ଦୀ ଗୁରୁ ନାନକ )

ମଧ୍ୟ ଘୋଡ଼ା ସଇସ କାମ କରିବାକୁ ପଡ଼ିଥିଲା । ଜେଲ୍‌ରେ ରହି ମଧ୍ୟ ନାନକ ଈଶ୍ୱରଙ୍କ ଭଜନ ଗାଇ ସାଥିରେ ଥିବା କଏଦୀମାନଙ୍କୁ ଶୁଣାଉଥିଲେ ।

ବାବର ଯେତେବେଳେ ଜାଣିଲେ ଯେ ଗୁରୁନାନକଙ୍କୁ ବନ୍ଦୀ କରାଯାଇଛି, ସେତେବେଳେ ସେ ଅନୁତାପ କରିଥିଲେ । ତାଙ୍କ ନିର୍ଦ୍ଦେଶକ୍ରମେ ନାନକଙ୍କୁ ବାବରଙ୍କ ନିକଟରେ ହାଜର କରାଯାଇଥିଲା । ଗୁରୁଙ୍କୁ ଦେଖି ବାବରଙ୍କ ମୁଣ୍ଡ ନଇଁ ପଡ଼ିଥିଲା । ତାଙ୍କୁ କ୍ଷମା ମାଗି ସେ କହିଥିଲେ—"ମୋର ସୈନ୍ୟମାନେ ଭୁଲ୍‌ବଶତଃ ଆପଣଙ୍କୁ ଚିହ୍ନି ନପାରି ବନ୍ଦୀ କରିଛନ୍ତି ଓ ବହୁତ ଦୁଃଖ ଦେଇଛନ୍ତି । ମୁଁ ସେଥିଲାଗି ଭାରି ଦୁଃଖିତ । ଆପଣ ବର୍ତ୍ତମାନ କାରାମୁକ୍ତ ।"

ନାନକ ତାହା ଶୁଣି କହିଥିଲେ—"କେବଳ ମୋ ଉପରେ ନୁହେଁ ଅସଂଖ୍ୟ ନିରୀହ ଲୋକଙ୍କ ଉପରେ ଆପଣଙ୍କ ସୈନ୍ୟମାନେ ଜୁଲମ କରିଛନ୍ତି । ବହୁ ସ୍ତ୍ରୀଙ୍କ ମଥାରୁ ସିନ୍ଦୁର ଲିଭାଇବାକୁ ସେମାନେ ପଛେଇନାହାଁନ୍ତି । ବହୁ ଧନସମ୍ପତ୍ତି ଲୁଣ୍ଠନ କରିଛନ୍ତି । ଏ ଦୃଷ୍ଟିରୁ ମୁଁ ଏକା କାରାମୁକ୍ତ ହେବାକୁ ଚାହେଁନାହିଁ । ନାନକଙ୍କ ଯୁକ୍ତି ଶୁଣି ବାବର ସେଠାରେ ଥିବା ସମସ୍ତ ବନ୍ଦୀଙ୍କୁ ମୁକ୍ତ କରିଥିଲେ ।

ନାନକ କେବଳ ଜଣେ ସନ୍ନ୍ୟାସୀ ନଥିଲେ । ସେ ଥିଲେ ଜଣେ ପରମ ଦେଶଭକ୍ତ । ଦେଶରେ ବାବରଙ୍କ ଅତ୍ୟାଚାର ଦେଖି ସେ କହିଥିଲେ—

—"ହେ ଈଶ୍ୱର ! ବାବର ହିନ୍ଦୁସ୍ଥାନକୁ ଭୟଭୀତ କଲା । ହେ କର୍ତ୍ତା, ହେ ପ୍ରଭୋ ! ତୁମେ ନିଜ ଉପରେ ଦୋଷ ନନେଇ

ମୋଗଲମାନଙ୍କୁ ଯମଦୂତ କରି ଏଇ ଦେଶକୁ ପଠାଇଲ । ସେମାନେ ଏତେ ଲୋକ ମାରିଲେ ତୁମ ମନରେ ଟିକିଏ ହେଲେ ଦୟା ଆସିଲା ନାହିଁ ? ହେ ସ୍ୱାମୀ ! ତୁମେ ତ ସମସ୍ତଙ୍କ ସ୍ରଷ୍ଟା । ଯଦି କୌଣସି ଶକ୍ତିଶାଳୀ ପୁରୁଷ ଅନ୍ୟ ଏକ ଶକ୍ତିଶାଳୀ ପୁରୁଷକୁ ଆକ୍ରମଣ କରେ ମୋ ମନରେ କ୍ରୋଧ ଆସିବ ନାହିଁ । ହେ ଈଶ୍ୱର ! ତୁମେ ସ୍ୱୟଂ ସମସ୍ତଙ୍କୁ ଏକାଠି କର, ପୁଣି ଅଲଗା କରିଥାଅ । ତୁମର ଲୀଳା ବୁଝିବ ବା କିଏ ? ଯେ ନିଜକୁ ବଡ଼-ବୋଲି ଭାବେ, ସେ ତୁମ ଦୃଷ୍ଟିରେ ଅତି ଛୋଟ । ଯେ ମରି ମଧ୍ୟ ବଞ୍ଚିବାର ଜାଣେ ସେ ଜୀବନରେ କିଛି ନା କିଛି ପାଇଥାଏ ।”

ଏହାପରେ ୨୫ ବର୍ଷ ଦେଶ ଓ ବିଦେଶରେ ବୁଲି ନାନକ ସମାଜରେ କିପରି ସଂସ୍କାର ଆସିବ, ସେଥିପାଇଁ ଚେଷ୍ଟା କରିଥିଲେ । ହଜାର ହଜାର ଲୋକ ତାଙ୍କର ମନଛୁଆଁ ଉପ-ଦେଶ ଶୁଣି ତାଙ୍କ ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ମୋଟଉପରେ ତାଙ୍କ ଜୀବନକୁ ତିନିଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମ ଭାଗ ସୁଲତାନପୁର ନବାବଙ୍କ ମୋଦୀଖାନାରେ ଚାକିରି, ଦ୍ୱିତୀୟ ଭାଗ ଭାରତ ଓ ଭାରତ ବାହାରେ ଧର୍ମ ପ୍ରଚାର ଓ ସମାଜ ସଂସ୍କାର ଏବଂ ତୃତୀୟଭାଗ ରାବୀ ନଦୀ କୂଳରେ ଲୋକଙ୍କୁ ଧର୍ମୋପଦେଶ ପ୍ରଦାନ । ଶେଷ ଜୀବନରେ ତାଙ୍କ ପରିବାରର ସମସ୍ତେ କରତାରପୁରରେ ଯାଇ ପହଞ୍ଚିଥିଲେ । କିଛିଦିନ ପରେ ତାଙ୍କର ପରମବନ୍ଧୁ ମର୍ଦ୍ଦାନାଙ୍କ ମୃତ୍ୟୁ ହୋଇଥିଲା ।

ନାନକ ଥିଲେ ହିନ୍ଦୁ ଓ ମୁସଲମାନ୍ ଦୁଇ ସଂପ୍ରଦାୟର ଗୁରୁ । ତେଣୁ ଏକ ସ୍ୱରରେ ସମସ୍ତେ କହୁଥିଲେ—

"ନାନକ ଶାହ ଫକୀର !
ହିନ୍ଦୁକାଗୁରୁ, ମୁସଲମାନକା ପୀର୍"

୧୫୩୯ ମସିହା । ସେପଟେମ୍ବର ୨୨ ତାରିଖରେ ସେ ମୃତ୍ୟୁବରଣ କରିଥିଲେ । କଥିତ ଅଛି ଯେ ତାଙ୍କ ଶବ ସଂସ୍କାର କରିବାପାଇଁ ଉଭୟ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ କଳହ ଲାଗିଥିଲା । ଉଭୟ ସଂପ୍ରଦାୟ ତାଙ୍କ ରୀତିରେ ଶବ ସଂସ୍କାର କରିବା ପାଇଁ ଜିଦ୍ ଧରି ବସିଥିଲେ । ଶେଷରେ ଦୁଇ-ପକ୍ଷର ଲୋକଙ୍କ ଦ୍ୱାରା ସ୍ଥିର ହୋଇଥିଲା ଯେ ରାତିରେ ଦୁଇ-ପକ୍ଷର ଲୋକେ ତାଙ୍କ ଶବଉପରେ ଫୁଲ ଚଢ଼ାଇବେ । ସକାଳୁ ଯାହା ଫୁଲ ମଉଳି ନଯିବ ସେହିମାନେ ହିଁ ତାଙ୍କର ଶବ ସଂସ୍କାର କରିବାକୁ ହକ୍‌ଦାର । ସେଇଆ ହେଲା । ସକାଳୁ ଦେଖାଗଲା ଯେ ଉଭୟ ପକ୍ଷର ଫୁଲ ତାଜା ରହିଛି । ନାନକଙ୍କ ମରଶରୀର ଆଉ ନାହିଁ । ତେଣୁ ଉଭୟ ପକ୍ଷ ତାଙ୍କ ଉପରେ ପଡ଼ିଥିବା ଚାଦରଟିକୁ ଦୁଇଖଣ୍ଡ କରି ବାଣ୍ଟିନେଇ ଯେ ଯାହା ରୀତିରେ ସଂସ୍କାର କରିଥିଲେ ।

ଏଥିରୁ ଜଣାପଡ଼େ ଯେ ସେ ଥିଲେ ଉଭୟ ସଂପ୍ରଦାୟର ପ୍ରତିନିଧି । ଏବେ ସ୍ୱର୍ଣ୍ଣମନ୍ଦିର, ଅନ୍ୟ ଗୁରୁଦ୍ୱାରମାନଙ୍କରେ ପଂକ୍ତି ଭୋଜନ ଓ ଭଜନ କୀର୍ତ୍ତନ ହେଲେ ହିନ୍ଦୁ ମୁସଲମାନ ସମସ୍ତେ ଯୋଗ ଦେଇଥାନ୍ତି । ଆଜି ଖାଲିସ୍ତାନ ଗଠନଲାଗି ଯେଉଁମାନେ ଅମାନୁଷିକ ଭାବରେ ନରହତ୍ୟା କରୁଅଛନ୍ତି, ତାହା ନାନକଙ୍କର ନୀତିବିରୁଦ୍ଧ ଥିଲା । କାରଣ ସେ ଜାତିଭେଦ ମାନୁ ନଥିଲେ । ଥିଲା ତାଙ୍କ ଜୀବନର ·ଭାଇ ଭାଇ ପରି ଚଳନ୍ତୁ, ଏହାହିଁ ସବୁ ସଂପ୍ରଦାୟର ଲୋକେ ମୂଳଲକ୍ଷ୍ୟ ।

———